# କାହା ପାଇଁ ରକ୍ତ ଝରେ

**ମାୟାଧର ନାୟକ**

ପ୍ରକାଶକ :

କଲ୍ୟାଣୀନଗର,
କଟକ-୭୫୩ ୦୧୩

ପ୍ରଥମ ପ୍ରକାଶ :
ନେତାଜୀ ଜୟନ୍ତୀ ■ ୧୯୯୮

ଅକ୍ଷର ଓ ଅଙ୍ଗସଜ୍ଜା :
ତପସ୍ୱିନୀ
କଲ୍ୟାଣୀ ନଗର,
କଟକ-୭୫୩ ୦୧୩

ମୁଦ୍ରଣ :
ଟେକ୍‌ନୋ ଆର୍ଟସ୍ ଅଫ୍‌ସେଟ୍
କଲ୍ୟାଣୀ ନଗର,
କଟକ-୭୫୩ ୦୧୩

ମୂଲ୍ୟ :
ଟ. ୫୦/-
(ପଚାଶ ଟଙ୍କା ମାତ୍ର)

**KAHA PAIN RAKTA JHARE**

A novel by :
**Mayadhar Nayak**

1st Edition - **1998**

Publisher :
**AKSHARA**
Kalyaninagar,
Cuttack-753 013

Price :
**Rs. 50/-**
(Rupees Fifty Only)

ଉତ୍ସର୍ଗ :

ମେହନତୀ ମଣିଷର
ମୁକ୍ତି-ମୈଦାନରେ
ଯେଉଁମାନେ ଯୁଗେଯୁଗେ
ରକ୍ତ ନିଗାଡ଼ି ଆସିଛନ୍ତି,
ସେଇମାନଙ୍କ
ଶିଖାୟିତ ସ୍ମୃତିରେ...

# କଥା କିଞ୍ଚିତ୍

ମୋର କାରାବାସ ହୋଇ ନଥିଲେ ହୁଏତ ଏଇ ଉପନ୍ୟାସ **କାହା ପାଇଁ ରକ୍ତ ଝରେ** ପ୍ରକାଶ ପାଇବା ସମ୍ଭବ ହୋଇ ପାରି ନଥାନ୍ତା । କାରାବାସ କାହା ପାଇଁ ଯନ୍ତ୍ରଣାର ଜତୁଗୃହ ହୋଇଥାଇ ପାରେ, କିନ୍ତୁ ମୋ ପାଇଁ ଥିଲା ସାଧନାର ସ୍ଫୁତି ପୀଠ । ମୋ ପ୍ରିୟ ପାଠକ ପାଠିକାମାନଙ୍କୁ କିଛି କହିବା ପୂର୍ବରୁ ପ୍ରଥମେ ତେଣୁ କାରାଗାରକୁ ହିଁ ଆଜି ପ୍ରଣାମ ଜଣାଉଛି ।

ପ୍ରଣାମ ହେ ପୁଣ୍ୟପୀଠ !

ପ୍ରଣାମ ହେ ତିମିର-ତୀର୍ଥ !

ଶତକୋଟି ପ୍ରଣାମ ତୁମକୁ ! ୧୯୭୫ ମସିହା ଜରୁରୀକାଳୀନ ପରିସ୍ଥିତି ସମୟରେ ଦୀର୍ଘ ୧୯ ମାସ କଟକ ସେଣ୍ଟ୍ରାଲ୍ ଜେଲ୍‌ରେ ବନ୍ଦୀ ଜୀବନ ଯାପନ କରୁଥିଲି । ପ୍ରଚୁର ଅବସର । ଅବସରର ସମ୍ପୂର୍ଣ୍ଣ ସମୟ ପଢ଼ାପଢ଼ି, ଲେଖାଲେଖିରେ ବିତେଇ ଦେଲି ।

ହଁ, ଏଇ ସମୟରେ ହିଁ ଖଣ୍ଡେ ଉପନ୍ୟାସ ଲେଖିବାରେ ମଜ୍ଜି ଯାଇଥିଲି । ମଝିରେ ମଝିରେ ନୂଆ ନୂଆ ପ୍ଲଟ୍ ମନକୁ ଆସିଲେ କିଛି ଗଳ୍ପ କବିତା ବି ଗାରେଇ ପକାଉଥିଲି ।

ଉପନ୍ୟାସ-ସମ୍ରାଟ ଶରତଚନ୍ଦ୍ରଙ୍କ ବହି ପଢ଼ିବା ମୋର ଅତି ପ୍ରିୟ ଥିଲା । ଶୁଣିଥିଲି, 'ଦେବଦାସ' ଉପନ୍ୟାସ ଶରତଚନ୍ଦ୍ରଙ୍କ ଗୋଟିଏ ରାତ୍ରିର ସୃଷ୍ଟି !

ସେଦିନ ୨୩ ତାରିଖ ନଭେମ୍ବର ୧୯୭୬ ମସିହା; ରାତି ୧୨ଟା । ସହବନ୍ଦୀମାନେ ଶୋଇ ପଡ଼ିଛନ୍ତି । ମୋ ଆଖିରେ କିନ୍ତୁ ଟିପେ ସୁଦ୍ଧା ନିଦ ନାହିଁ । ଲେଖା ଆରମ୍ଭ କଲି – କଲମ ଆଉ ଥମିଲାନି । ଲେଖୁ ଲେଖୁ ହଠାତ୍ କଲମ ଅଟକିଗଲା । କିଛି ସମୟ ଭାବୁ ଭାବୁ ପକ୍ଷୀମାନଙ୍କ କାକଳି ଶୁଣାଗଲା । ଝରକାରେ ଅନାଇଲା ବେଳକୁ ଆକାଶ ଫରଚା ହୋଇ ଆସିଲାଣି ।

ଭୋର ୫ଟା, ଲେଖା ଇତି ।

ଆଖିରୁ ଲୁହ ଝରଝର ହୋଇ ଝରିଆସିଲା । ସବୁ ଲୁହ ଯେମିତି ଲେଖା ଖାତାରେ ପଡ଼ି ଅକ୍ଷରଗୁଡ଼ା ଭିଜି ଗଲାଣି ! ଏପରିକି ଜେଲ୍‌ର ଷ୍ଟାମ୍ପ ଓ ଦସ୍ତଖତ ତାରିଖ ଥିବା ସ୍ଥାନରେ ମଧ୍ୟ ଲୁହ ପଡ଼ିଛି ! ଲୁଚେଇ ଲୁଚେଇ ଲୁହ ପୋଛୁଥିଲା ବେଳେ ବୟୋଜ୍ୟେଷ୍ଠ ବନ୍ଦୀ ପୁରୀର ପଦ୍ମଚରଣ ସାମନ୍ତସିଂହାର ଉଠିପଡ଼ିଥିଲେ – ପଚାରିଲେ : କ'ଣ ରଜା - ଶୋଇନା ? ରାତିସାରା ଲେଖୁଛ ?

ପଦ ଭାଇ ଶ୍ରଦ୍ଧାରେ ମୋତେ 'ରଜା' ବୋଲି ଡାକନ୍ତି ।

ସେ କହିଲେ - କ'ଣ ଲେଖୁଥିଲ ?

ମୁଁ କହିଲି - ଉପନ୍ୟାସ ।

ସେ କହିଲେ - ସରିଲା ?

ମୁଁ କହିଲି - ହଁ ।

କେହି ବିଶ୍ୱାସ କରନ୍ତୁ ବା ନକରନ୍ତୁ, କିନ୍ତୁ ପାଞ୍ଚ ଘଣ୍ଟାରେ ଏ ଉପନ୍ୟାସଟିର ସର୍ଜନା ଓ ସମାପ୍ତି । ମୁଁ କିନ୍ତୁ ଆଉ ଲେଖି ପାରି ନଥିଲି । ଭିଜା ଲୁହରେ ଶେଷ କରିଦେଇଥିଲି ।

୧୯୭୬ ନଭେମ୍ବରର ଲେଖା ଏବେ ୧୯୯୮ ଜାନୁଆରୀରେ ପ୍ରକାଶିତ । ବ୍ୟବଧାନ ଠିକ୍ ୨୧ ବର୍ଷ ୪ ମାସ । ଉପନ୍ୟାସଟିକୁ ବଦଳାଇନି ଆଉ । ମୂଳ ପାଣ୍ଡୁଲିପିଟିକୁ ଜେଲ୍ କାଗଜରୁ ଉତାରିବା ବେଳେ, କିଛି କିଛି ଶବ୍ଦ ଖାଲି ଯୋଡ଼ିଛି ଯାହା ।

କର୍ମ ସଂଗ୍ରାମର ଅବାରିତ ସ୍ରୋତଧାରାରେ ସାଢ଼େ ଏକୋଇଶ ବର୍ଷ କେତେବେଳେ ଅତିକ୍ରାନ୍ତ ହୋଇଯାଇଛି, ହିସାବ ରଖି ପାରିନି ଆଉ । । ଉପନ୍ୟାସର ପାଣ୍ଡୁଲିପିଗୁଡ଼ିକୁ ଦୀର୍ଘକାଳ ଧରି ସାଇତି ରଖିଛି, ବେଳେ ବେଳେ ମୂଷା ଆକ୍ରମଣ କରି କିଛି କିଛି ନଷ୍ଟ କରିଛନ୍ତି । ଏହି ଉପନ୍ୟାସର ସାରାଂଶ ଶୁଣି ଦୁଇଜଣ ଫିଲ୍ମ ପ୍ରଯୋଜକ ଏହାକୁ ସିନେମା ପରଦାରେ ରୂପାନ୍ତରିତ କରିବାକୁ ଅନୁରୋଧ କରିଛନ୍ତି - ହେଲେ ସେମାନଙ୍କୁ ଦେଇ ପାରିନି । ଏବେ ଜଣେ ପ୍ରଯୋଜକ ବାଧ କରିବାରୁ ତାଙ୍କୁ କହିଲି : ବହିଟି ଛପା ହୋଇଯାଉ - ତା'ପରେ ଯାହା ହେବ । କାରଣ ସିନେମା କଲା ବେଳେ ହୁଏତ କିଛି ବଦଳି ହୋଇପାରେ - ଯଦି ଉପନ୍ୟାସଟି ତା'ଆଗରୁ ମୁଦ୍ରିତ ହୋଇଯାଇପାରେ, ତା'ହେଲେ ମୂଳ ବିଷୟବସ୍ତୁ ଅନ୍ତତଃ ଅକ୍ଷତ ରହିଯିବ, ଯାହା ପ୍ରିୟ ପାଠକପାଠିକାମାନଙ୍କ ପାଇଁ ଦୀର୍ଘ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱ ସମୟ ଗଚ୍ଛିଧନ ପରି ସାଇତି ରଖିଥିଲି ।

ଜାଣେନା - ଏ ବହି ଖଣ୍ଡିକୁ ପାଠକସମାଜ କିଭଳି ଗ୍ରହଣ କରିବେ । ତେବେ ପାଠକପାଠିକାଙ୍କ ନିନ୍ଦା ପ୍ରଶଂସାକୁ ସମଭାବରେ ଗ୍ରହଣ କରିନେବାକୁ ଶପଥ କରୁଛି ।

ସୌଜନ୍ୟମୁଗ୍ଧ

ନେତାଜୀ ଜୟନ୍ତୀ

୨୩.୧.୯୮

ସୁନ୍ଦରୀ ନଦୀ ଆରପଟେ ରାଇଘାଟୀ ପାହାଡ଼ ।

ପାହାଡ଼ ତଳକୁ ସାତ କିଲୋମିଟର ଦୂରରେ ପାଟପୁର ଗାଁ । ଏ ଗାଆଁର ସବୁରି ତୁଣ୍ଡରେ 'ନେତାବାବୁ' ସିଏ— ମାନସ ଦାସ । କେହି କେହି ମାନୁବାବୁ ଡାକନ୍ତି । ମାନୁବାବୁ ନଈପାର ହୋଇ ପାହାଡ଼ ଚଢ଼ି ପୁଣି ଖସିଲା ବେଳକୁ ସୂର୍ଯ୍ୟ ପଶ୍ଚିମ ଆଡ଼କୁ ଢ଼ଳୁଛନ୍ତି । ଖରା ମଉଳିଛି । ବର୍ଷାର ଚାରିଧାରାରେ ଧରା ମନେ ହେଉଛି ବେଶ୍ ଶାନ୍ତ ଶୀତଳ ଆଉ ସ୍ନିଗ୍ଧ । ପ୍ରକୃତି ଫେରିପାରିଛି ତା'ର ରୂପଲାବଣ୍ୟ । ଦିଶୁଛି ସତେଜ ଶ୍ୟାମଳ । ଫୁଲ ଫୁଟିବାକୁ ଆରମ୍ଭ କରିଛି । ଫୁଲରୁ ଝରି ପଡୁଛି ମହୁ ।

କଥା ଥିଲା— ଫି ସନ ଏଇ ଅଗଷ୍ଟ ପନ୍ଦର ତାରିଖରେ ପାଟପୁର ଗାଁରେ ଆଖପାଖ ଗାଁ ଗଣ୍ଡାରୁ ଲୋକମାନେ ଆସି ରୁଣ୍ଡ ହେବେ । ଗଣମୁକ୍ତି ସଂକଳ୍ପ ଦିବସ ପାଳନ ପାଇଁ ସଭା ହେବ । କେତେ କଥା ପଡ଼ିବ । ସ୍ୱାଧୀନତା କେତେବାର୍ଷ ଗଲାଣି । ଲୋକେ କେତେ ସ୍ୱାଧୀନ । ଏଇମିତି ସାରା ଦେଶର ଭଲମନ୍ଦ ଖବର ଶୁଣାଯିବ ।



ନେତାବାବୁ - ମାନୁବାବୁ ଯେଉଁଠି ଥାଆନ୍ତୁ ନା କାହିଁକି ସେ ସେହିଦିନ ନିଶ୍ଚୟ ହାଜର ହେବେ। ରାଇଜ ଯାକର ଖବର କହିବେ। ଆଗକୁ କ'ଣ କରିବାକୁ ହେବ ସେ କଥା ବି ବୁଝେଇ ସୁଝେଇ କହିବେ। ମାନୁବାବୁ ଢ଼ୋଲ ପଥର ବନ୍ଧ ପାର ହୋଇ ଗାଁ ମୁଣ୍ଡରେ ପହଞ୍ଚିଲାକ୍ଷଣି ଗାଁର ଛୋଟ ଛୋଟ ପୁଅଝିଅମାନେ ରଡ଼ି ଛାଡ଼ିଲେ ଇନ୍‌କିଲାବ ଜିନ୍ଦାବାଦ୍। ସେ ସାଇକେଲ୍‌ରୁ ଓହ୍ଲାଇ ଛୋଟ ପିଲାମାନଙ୍କୁ କୁଣ୍ଢାଇ ପକାଇଲେ। ଲଙ୍ଗଳା ପିଲା ଦୁଇଟାକୁ ଏକାଥରେ ଦି'ହାତରେ କୋଳେଇ ନେଇ ଗେଲ କରିପକାଇଲେ। ଛୋଟ ଝିଅଟିର ନାକରୁ ପାଣି ପଡୁଥିଲା— ନିଜ ରୁମାଲ କାଢ଼ି ନାକ ପୋଛି ଦେଲେ। ନେତା ବାବୁଙ୍କୁ ଛୁଇଁବା ପାଇଁ ତୁମୂଳ ପ୍ରତିଯୋଗିତା। ଠେଲା ପେଲା। ମାନୁବାବୁ ହଠାତ୍ ବଡ଼ପାଟିରେ 'ସାବଧାନ' କହିଦେବାରୁ ସମସ୍ତେ ସ୍ତବ୍ଧ ହୋଇ ଠିଆ ହୋଇଗଲେ।

—ଲାଇନ୍ କର। ପ୍ରସେସନ ହେବ।

ସମସ୍ତେ ସଙ୍ଗେ ସଙ୍ଗେ ଦୁଇଲାଇନ କରି ଧାଡ଼ି ବାନ୍ଧି ଦେଲେ। ସବାଆଗରେ ଗୀତ ଗାଇଗାଇ ଚାଲିଥାନ୍ତି ମାନୁବାବୁ। ଏହି ସଂଗ୍ରାମୀ ସଙ୍ଗୀତ ସହ ସମସ୍ୱରରେ ତାଳ ମିଳାଇ ନ ପାରିଲେ ବି ଛୋଟ ଛୋଟ ପିଲାମାନଙ୍କର ସେଇ ଲମ୍ବା ଧାଡ଼ି ଦୁଇଟା ସ୍ୱର ବେସୁରାରେ ଗର୍ଜି ଉଠିଲା। ସେତେବେଳକୁ ଘରେ ଯେଉଁ ଝିଅବୋହୂ ବୁଢ଼ାବୁଢ଼ୀମାନେ ଥିଲେ, ପଦାକୁ ବାହାରି ଆସିଲେଣି। ଗାଁକୁ ନେତାବାବୁ ଆସିଛି। ତାଙ୍କୁ ଟିକେ ମନ ପୂରାଇ ଦେଖିବେ। ଏଇ ବନବାସୀମାନଙ୍କ ମୁଖମଣ୍ଡଳରେ ଖେଳିଗଲା ଛଳନାହୀନ ହସର ଲହରୀ। ଏଇ ନେତାବାବୁଙ୍କୁ ସେମାନେ ଯେତେ ଦେଖିଲେ ସେତେ ନୂଆନୂଆ ଲାଗୁଥାଏ। ଘରେ ଘରେ ନିମନ୍ତ୍ରଣ।

— ବାବୁ ଆମ କୁଡ଼ିଆକୁ ଆସିବୁନି ?

— ଆସିବି ଆସିବି ନିଶ୍ଚୟ ଆସିବି— କହି କହି ଚାଲିଥାନ୍ତି।

ଅଶୀବର୍ଷର ଚମ ଧୁଡୁଧୁଡୁ ବୁଢ଼ୀଟିଏ ବଙ୍କୁଲୀ ବାଡ଼ି ଧରି ଥରି ଥରି ଆଗରେ ଆସି ଠିଆ ହୋଇଗଲା। କହିଲା— ବାବୁ— ତୁ ଏତେଦିନ ହେଲା କୁଆଡ଼େ ଯାଇଥିଲୁ ? ତୋ' ପାଇଁ ନେଉଆ ରଖି ରଖି ପଚିଗଲା। କାଲି ପିଜୁଳି ଦି'ଟା ଆଣି ରଖିଛି। ଆସିବୁନି ? ଆ— ପିଜୁଳିଟିଏ ଖାଇଦେବୁ।

— ମା', ମାଆ ଲୋ ମୋର— କହି ବୁଢ଼ୀକୁ କୁଣ୍ଢାଇ ପକାଇଲେ। କହିଲେ— ଦେ— ମୋ ପିଜୁଳି ଆଣି ଦେ।

— ତୁ ଟିକେ ରହରେ ବାବୁ—ଏଇ କ୍ଷଣି ଆଣୁଚି । ମାନୁବାବୁ ଗୀତର ସ୍ୱରକୁ ଦୋହରାଇଲେ । ବୁଢ଼ୀ ଅତି ଯତ୍ନରେ ସାଇତି ରଖିଥିବା ପିଙ୍କୁଳି ଦୁଇଟା ବଢ଼ାଇ ଦେଇ ଅପାର ଆନନ୍ଦରେ ମାନୁବାବୁଙ୍କ ତୋଫା ମୁହଁଟାକୁ ଟିକେ ଆଉଁସି ଦେଲା । ମୁହଁର ହସରେ ସମସ୍ତେ ସମ୍ବର୍ଦ୍ଧନା ଜଣାଇଲେ । କେତେକ ଯୁବକ ସମ୍ମାନଜନକ ବଜ୍ରମୁଷ୍ଟି ସହ ଜଣାଇଲେ ରକ୍ତପ୍ରଣାମ । ମାନୁବାବୁ ମୁହୂର୍ତ୍ତକ ମଧ୍ୟରେ ସମସ୍ତଙ୍କ ମନକୁ ସତେଅବା ହରଣ କରିନେଲେ । ସଙ୍ଗୀତଭରା ଶୋଭାଯାତ୍ରା । ଶେଷରେ ଅଟକିଗଲା ମାଣିକ ମାଝୀ ଘର ପାଖରେ ।

ମାଣିକ ମାଝୀ ମାନୁବାବୁଙ୍କୁ ବାଟ ଓଗାଳିଲା । ସମସ୍ତଙ୍କୁ କହିଲା— ବାବୁ ଟିକେ ଆମ ଘରେ କ'ଣ ଦି'ଟା ଖାଇଦେଇ ଯିବୁ । ସଭା ହେବାକୁ ଆଉ ଦି ଘଡି ଉଚ୍ଛୁର ଅଛି । ତମେ ସବୁ ଯାଇ ଘରୁ ଘରୁ ଲୋକ ଡାକି ରୁଣ୍ଡ କର ।

ବୁଢ଼ା କଥାକୁ ଅନ୍ୟମାନେ ମାନିଲେ । ବୁଢ଼ା ରଡି ଛାଡିଲା.... ଫୁଲ.... ଲୋ ଫୁଲ ! ଦେଖିବୁ ଆ— ନେତାବାବୁ ଆସିଛି ।

— ବାଆ ! ନେତାବାବୁ ଆଇଚି ! ଯାଉଚି-ଯାଉଚି ।

ମକାବାରି ଭିତରେ ଫୁଲ ମକା ଭାଙ୍ଗୁଥିଲା । ତା ନେତାବାବୁ ଆସିବା ଖବର ପାଇ ଛୁଟିଆସିଲା । ଦୂରରୁ ମୁରୁକି ହସିଦେଲା । ସତେ ଯେପରି ଫୁଲ ମୁଖଶ୍ରୀରୁ ଲାବଣ୍ୟ ଝରିପଡ଼ିଲା । କୋଡିଏ ବର୍ଷର ଝିଅ ଫୁଲ ! ଗୋଟିଏ ଚାଉଳରେ ଗଢ଼ା । କାଞ୍ଚନଫୁଲ ପରି ଗୋରା ଟକଟକ ଦିହ । କଥା ପୁଣି ତାର ମଧୁଝରା । ଚାଲିଗଲା ବାଟ ମହକି ଉଠେ । ହସିଦେଲେ ପ୍ରୀତି ଝରଣା ବୋହିଯାଏ । ଫୁଲ ଯଦି ପ୍ୟାରିସ୍‌ରେ ଜନ୍ମ ହୋଇଥାନ୍ତା— ଆଜି ହୁଏତ କୌଣସି ବିଖ୍ୟାତ ଚିତ୍ରକରର ଷ୍ଟୁଡ଼ିଓରେ ଶ୍ରେଷ୍ଠ ମଡେଲର ସ୍ଥାନ ଦଖଲ କରିବସିଥାନ୍ତା । ବମ୍ବେରେ ଜନ୍ମ ହୋଇଥିଲେ କାପୁର ବଂଶଙ୍କ ପାଲରେ ପଡ଼ି ସହରର କାନ୍ଥ ବାଡରେ ସିନେମା ପୋଷ୍ଟର ହେଇ ଛପା ହୋଇଥାନ୍ତା । କିମ୍ବା ଲକ୍ଷ୍ନୌର କୌଣସି କୋଠିରେ ଥିଲେ— ରୂପସୀ ବାଈଜୀ ହୋଇ ତବଲାର ତାଳେ ତାଳେ ଝରାଇ ଚାଲିଥାନ୍ତା ତାର ଉଦାସ ହୃଦୟର ହାହାକାର... କିମ୍ବା ଚୌରଙ୍ଗୀରେ ଥିଲେ ପଣ୍ୟଦ୍ରବ୍ୟ ରୂପେ ନିତିଦିନ ନିଲାମ ହେଉଥାନ୍ତା ତାର ଜୀବନଯୌବନ !

ନା, ଏସବୁ ମାୟାମରୀଚିକାର ମୂଳକଠୁ ଅନେକ ଦୂରରେ ଏ ଫୁଲ... ସେ ଜନ୍ମ ହୋଇଛି ପାହାଡ଼ପର୍ବତଭରା ବଣଜଙ୍ଗଲଘେରା ସବୁଜ ଶ୍ୟାମଳ

ପ୍ରକୃତିର ପରିଧି ଭିତରେ... କୁଳୁକୁଳୁ ଗୀତ ଗାଇଯାଉଥିବା ପାହାଡ଼ୀ ଝରଣା କୂଳେ— ପାଟପୁର ଗାଁରେ— ମାଣିକ ମାଝୀର ପତର କୁଡ଼ିଆ ଘରେ । ମାଟି ହାଣୁଛି— ବୋହୁଛି—ବିଲକାମ କରୁଛି— କାଠ ଆଣୁଛି— ମୂଲ ବି ଲାଗୁଛି । ଛଳନାହୀନ, କପଟଶୂନ୍ୟ ତା'ର ସ୍ୱଭାବ । ଫୁଲ ହସି ହସି ସମସ୍ତ ଅହମିକାକୁ ମିଥ୍ୟା ବୋଲି ପ୍ରମାଣିତ କରିଦେଇପାରେ ।

— ବାବୁ ! ଏତେଦିନ ହେଲା କୁଆଡ଼େ ଯାଇଥିଲୁ ? ମୁଁ ମାସେ ହେଲା ଆଇଲିଣି । ଶୁଣୁଛୁ ! ଶାଶୁ ମୋତେ ବାଡ଼େଇଲା । ଶଶୁର ଗାଳିଦେଲା— ଗିରସ୍ତ ଘରୁ ତଡ଼ିଦେଲା ।

—ଫୁଲ !

ଫୁଲ ଆପଣାର ଦୁଃଖକୁ ଲୁଚାଇବାକୁ ଯାଇ କହିଲା— ବାବୁ ! ମକା ଖାଇବୁ ?

ବାଆ— ଘର ଭିତରେ ଖଟ ଉପରେ କନ୍ଥା ପାରିଦେ— ବାବୁ ବସୁ । ମକା ପୋଡ଼ି ଆଣୁଛି ।

କଷି କଷି କଞ୍ଚାଳିଆ ମକା ଗାଡ଼ ନିଆଁରେ ପୋଡ଼ାଯାଇଛି । ଲେମ୍ବୁ ଲୁଣ ଆଉ କଞ୍ଚାଲଙ୍କା ଘଷାଯାଇଛି । ସେଇ ମକାରୁ ଛଡ଼େଇ ଛଡ଼େଇ ବଢ଼େଇ ଦେଉଥିଲା ବାବୁଙ୍କୁ । କଷି କଷି ମକା ସହ ଲେମ୍ବୁ କଞ୍ଚାଲଙ୍କା ଲୁଣର ମିଶ୍ରଣରେ ସୃଷ୍ଟି ହୋଇଥିଲା ଗୋଟାଏ ଚମତ୍କାର ସ୍ୱାଦ । ଫୁଲ ମୁହଁ ତଳକୁ ପୋତି ମକା ଛଡେଇ ଦେଉଥାଏ । ମାନୁ ବାବୁ ଅପୂର୍ବ ସ୍ୱାଦ ଅନୁଭବ କରୁଥାନ୍ତି । ମକା ଖାଇବା ସମୟରେ ଅନ୍ୟ ଲୋକମାନେ ଯେଝା କାମରେ ପଳେଇ ଯିବାକୁ ଫୁଲର ବାପା ତାଗିଦ୍ କରିଦେଲା । ଖାଇବା ସମୟରେ ଅନ୍ୟମାନେ ପାଖରେ ଠିଆହେବା ବୋଧେ ସେମାନଙ୍କୁ ନାପସନ୍ଦ ଲାଗିଲା । କିଛି ସମୟ ନୀରବତା ପରେ ନିରୋଳା ନିଛାଟିଆ ପରିବେଶରେ ଫୁଲ ମୁହଁ ତଳକୁ କରି ବସିଥାଏ । ମଝିରେ ମଝିରେ ବାବୁଙ୍କୁ ଅନାଇ କ'ଣ କହିବ କହିବ ବୋଲି କହିପାରୁ ନଥାଏ । ଯେଉଁ କଥାକୁ ସେ କାହାକୁ କହିପାରୁନି— ଖାଲି ଜଳିପୋଡ଼ି ପାଉଁଶ ହୋଇଯାଉଛି— ସେ ସବୁ ମରମ ବେଦନା ଆଜି ବାବୁଙ୍କୁ କହିବ— ହେଲେ କେମିତି କହିବ— କେଉଁ ଭାଷାରେ କହିବ— ଏ କଥାଗୁଡ଼ା ଫୁଲ ମନରେ ଘୂରି ଘୂରି ଚକା ଭଉଁରୀ ଖେଳୁଥିଲା ।

ନା— ଯେମିତି ହେଉ ଯୋଇ ଭାଷାରେ ହେଉ— ସବୁ କଥା ଗୁଡ଼ା ଫୁଲ କହିଯିବ ବୋଲି ମନେ ମନେ ସ୍ଥିର କରି କହିଲା—

ବାବୁ— ଗୋଟେ କଥା ପଚାରିବି ।

— ପଚାର !

ଫୁଲ କହିବ କହିବ ବୋଲି କିଛି ସମୟ ଚୁପ୍‌ଚାପ୍ ତଳକୁ ମୁହଁ ପୋତି ବସି ରହିଲା ।

— ତୋ ମୁହଁରୁ ଯଦି କଥା ନ ବାହାରିବ ତା' ହେଲେ ତୋତେ କହିବି କ'ଣ ? ତୁ ଯଦି ଅନ୍ତର ଖୋଲି ସବୁକଥା ନ କହିବୁ, ତା' ହେଲେ ତୋର ଯେଉଁ ଦୁଃଖ, ସେ ଦୁଃଖ କ'ଣ ଚାଲିଯିବ ? ଜାଣିଲୁ ଫୁଲ- ଏଇ ଦୁନିଆରେ ପ୍ରତ୍ୟେକ ମଣିଷ ଜଣେ ଜଣେ ଭଣ୍ଡ । କିଏ ଗୋଟିଏ ପର୍‌ସେଣ୍ଟ ତ କିଏ ଶହେ ପର୍‌ସେଣ୍ଟ । ପ୍ରତ୍ୟେକେ କିଛି ନା କିଛି ମନର କଥା ଲୁଚେଇ ରଖନ୍ତି, ଗୋପନରେ କିଛି କାମ କରିଯାଆନ୍ତି- ଭାବନ୍ତି-କେହି ଜାଣିପାରିବେ ନାହିଁ । ଯଦିବା କେହି ନଜାଣିଲେ ସେ ତ ନିଜେ ଜାଣିଲା-ମିଛ କହିଛି-ଠକିଛି-ପାପ କରିଛି । ସେ ପ୍ରକାଶ କରୁ କି ନକରୁ-କିନ୍ତୁ ତାର ଚାଲିଚଳନ-କଥାବାର୍ତ୍ତା-ଢ଼ଙ୍ଗଢ଼ାଙ୍ଗ୍-ଆଚାର ବ୍ୟବହାର-ଚେହେରା-ଆଖି-ମନ-କାମରେ ଭଣ୍ଡାମି ଧରା ପଡ଼ିବାକୁ ବାଧ । ଦୁନିଆରେ କୌଣସି ଶକ୍ତି ନାହିଁ- ଯାକୁ ଲୁଚେଇ ରଖିବ । ଯେଉଁମାନେ ଦୋଷ କରି ମାନିଯାଆନ୍ତି କିମ୍ବା ମନରେ କୌଣସି ଦ୍ୱନ୍ଦ୍ୱ ଆସିଲେ ଖୋଲାଖୋଲି ଭାବେ ପ୍ରକାଶ କରନ୍ତି-ବଡ଼ ଥିଲେ ପଚାରି-ସାନ ଥିଲେ ବିଚାରି ନୀତିରେ କାର୍ଯ୍ୟ କରନ୍ତି ଆଉ ନିର୍ଦ୍ଦୋଷ ହେବାକୁ ଅହରହ ଉଦ୍ୟମ କରନ୍ତି- ସେମାନେ ସମାଜରେ ବଡ଼ ମଣିଷ-ଭଲ ମଣିଷ ହୋଇଯାଆନ୍ତି । ତୁ ଯଦି କିଛି ଲୁଚାଉଥାଉ-ତାହାହେଲେ ମାନିଯା-ସ୍ୱୀକାର କର-ଦେଖିବୁ ମନ ହାଲକା ହୋଇଯିବ-ଦୁଃଖର ପଥର ଜୀବନ ଉପରୁ ଉତୁରିଯିବ-ଯଦି ସଠିକ୍ ରାସ୍ତାରେ କର୍ମ କରିଯିବୁ ତାହାହେଲେ ଜୀବନରେ ଆନନ୍ଦର ଫୁଲ ଫୁଟିଉଠିବ । ନିର୍ଭୟରେ-ନିର୍ଦ୍ୱନ୍ଦ୍ୱରେ ଅନ୍ତରର କଥା କହିପକା-ଦେଖିବୁ ଦୁଃଖ ଚାଲିଯିବ ।

— କ'ଣ କହିଲୁ ବାବୁ ! ଅନ୍ତର କଥା କହିଲେ ଦୁଃଖ ଚାଲଯିବ ?

— ସବୁଲୋକଙ୍କ ପାଖରେ ଅନ୍ତର ଖୋଲି କହିଲେ କ'ଣ ଦୁଃଖ ଚାଲିଯାଏ ? ଯେଉଁମାନଙ୍କର ହୃଦୟ ନାହିଁ—ସେମାନଙ୍କ ପାଖରେ କହିଲେ

ଦୁଃଖ ବରଂ ବଢ଼ିବ । ଯେଉଁମାନଙ୍କର ହୃଦୟ ଅଛି, ମନରେ ମମତା ଅଛି, ସେଇମାନଙ୍କ ପାଖରେ କହିଲେ କିଛି ସୁଫଳ ମିଳିବ । ତୁ ଯଦି ଭାବୁଛୁ ମୋର ହୃଦୟ ଅଛି, ମୁଁ ତୋତେ କିଛି ପରାମର୍ଶ ଦେବି, ତୋର ଦୁଃଖ ଚାଲିଯିବ, ତା' ହେଲେ କହିବାରେ ଲାଜ କ'ଣ ଅଛି ? ମନ କଥା ଖୋଲି କହ ନା ! ଯେଉଁ କଥା ତୁ ଏ ପର୍ଯ୍ୟନ୍ତ କାହାକୁ କହିନୁ— ଫୁଲ ! ମନ ଖୋଲି କହ ।

— ବାବୁ !

— ଯୋଉ କଥା ଏ ଦୁନିଆରେ ପଶୁପକ୍ଷୀ, କୀଟପତଙ୍ଗ ଠାରୁ ଆରମ୍ଭ କରି ସବୁଠୁ ଚାଲାକ ଚତୁର ମଣିଷ ଜାତିଙ୍କର ପ୍ରତି ମୁହୂର୍ତ୍ତରେ ଘଟି ଯାଉଛି— ସେ କଥାଟା ସମସ୍ତେ ଜାଣି ବି ଅଜଣା । ସେମାନେ ଲାଜେଇ ଯାଆନ୍ତି— ମୁଁ ବି ଲାଜେଇ ଯାଏ— କଥା ଗୁଡ଼ାକ ପାଟିରୁ ବାହାରେ ନାହିଁ ।

— ତୋ ମୁହଁରୁ ଯଦି କଥା ବାହାରିବ ନାହିଁ, ତା'ହେଲେ ତତେ କହିବି କ'ଣ ? ଅନ୍ତର ଖୋଲି ସବୁକଥା କହିଲେ-ମନରଦୁଃଖ ଲାଘବ ହୁଏ ।

— କ'ଣ କହିଲ ବାବୁ ! ଅନ୍ତର ଖୋଲି କହିଲେ ସତେ କ'ଣ ଦୁଃଖ ଲାଘବ ହେବ !

ଏଇ ଦୁନିଆଁରେ ସବୁ ମଣିଷ କେତେ ଯେ ଅକୁହା କଥା ମନ ଭିତରେ ସାଇତି ରଖି ସମାଜରେ ଅନ୍ୟମାନଙ୍କ ପାଖରେ, ଚାରିଆଡ଼େ ହସି ଖେଳି ଘୂରି ବୁଲୁଛନ୍ତି, ତାହା ବୁଝିବା ମୁସ୍କିଲ । ସେଇ ଗଦା ଗଦା ମଣିଷ ଭିତରୁ ଝିଅଟିଏ ବନଫୁଲ ।

ଫୁଲ କଥାଟା କହିବ କହିବ ବୋଲି ବର୍ଷକ ଆଗରୁ ଭାବିଲାଣି— ହେଲେ କହି ପାରୁ ନଥିଲା । ହୁଏତ ସୁଯୋଗ, ଅବସ୍ଥା, ପରିସ୍ଥିତି, ପରିବେଶ ସୃଷ୍ଟି ହୋଇ ନଥଲା । ଆଜି ଫୁଲ ତା' ମନର ଅକୁହା କଥା ଫିଟାଇ କହିବ ।

— ବାବୁ ! ମକା ଭଲ ଲାଗୁଛି ?

— ଓଃ ! ଭାରି ବଢ଼ିଆ ।

— ମୋ ମନ କଥା ତା'ହେଲେ କହିବି ?

— କହ ।

— ତୁ ରାଗିବୁ ନାହିଁ ତ ?

— ଓଃ ! କ'ଣ କହ ନା ?

ଏଇ ବନବାସୀଙ୍କ ପାଇଁ ତୁ କ'ଣ ନ କରିଛୁ ! ଆମର ଜୀବନ ବଞ୍ଚାଇଲୁ । ଆମକୁ ସୁବୁଦ୍ଧି ଦେଲୁ । ନୂଆ ଜୀବନ ଦେଲୁ । ସମସ୍ତଙ୍କୁ ଆପଣାର କରିନେଲୁ— ଏତେ ଉପକାର କଲୁ—ମୋର ଟିକେ ଉପକାର କରନ୍ତୁ ଭଲା— ଟିକେ ବୁଦ୍ଧି ଦିଅନ୍ତୁ ଭଲା ।

— କ'ଣ କହୁନୁ ?

— ମୋ ଗିରସ୍ତ ମୋତେ ତଡ଼ିଦେଲା । ମୁଁ କରିବି କ'ଣ ?

— ଆରେ, ହଁ—ଫୁଲ— ତୁ କହୁଥିଲୁ ନା—ଶାଶୁ ବାଡ଼େଇଲା— ଶଶୁର ଗାଳି ଦେଲା—

— ଆଉ ଗିରସ୍ତ ଘରୁ ବାହାର କରିଦେଲା ।

— କାହିଁକି ଇମିତି ସବୁ ହେଲା ?

ଜାଣିଲୁ ବାବୁ ! ମୋର ବାହାଘର ପାଞ୍ଚ ବରଷ ହୋଇଗଲା । ପିଲାଝିଲା କିଛି ହେଲାନି । ପାଞ୍ଚ ବରଷ ହେଲା ଗିରସ୍ତଘରେ ବିଲକାମ କରିଛି, ମାଟି ହାଣିଛି, କାଠ ଆଣିଛି, ଘର କାମ କରି କରି ଦିହ କଣ୍ଟା ହୋଇଗଲା— ସେମାନେ ମୋତେ ଭଲ ପାଇଲେ ନାହିଁ । ଶାଶୁ କହିଲା— ବୋହୂଟା ଫଳ ଦେଲାନି— ଫୁସ୍କି ଗଲା । ଗିରସ୍ତ କହିଲା— ବାହାର୍ ମୋ ଘରୁ । ଆଉ ଗୋଟିଏ ମାଇକିନା ବାହା ହେବି । ଏଇମିତି ବର୍ଷକ ଆଗରୁ କହୁଥିଲେ— ଗଲା ମାସରେ ସତକୁ ସତ ଯାହା କହୁଥିଲେ— ତାହା କରିଦେଲେ । ମୋତେ ଘରୁ ବାହାର କରିଦେଲେ— ବାଆ ପାଖରେ ଏମିତି କେତେଦିନ ରହିବି କହିଲୁ ?.... ଆଚ୍ଛା ମୋର କ'ଣ ଆଉ ମୋଟେ ପିଲାଝିଲା ହେବନି ?

ମାନୁବାବୁ ସବୁ ଧୀରସ୍ଥିର ହୋଇ ମନଯୋଗରେ ଶୁଣୁଥିଲେ । ଫୁଲ ମକା ଦେଉ ଦେଉ ପ୍ରଶ୍ନର ଉତ୍ତର ପାଇଁ ତାଙ୍କ ମୁହଁକୁ ନିରେଖି ଚାହିଁଲା । ଫୁଲ ହୃଦୟରେ ମାତୃତ୍ୱର ବାସନା ଜାଗିଉଠିଛି । ଯଦିଓ ଜୀବନ, ସମାଜ ବିଜ୍ଞାନ ସଂପର୍କରେ ବହୁ ସମସ୍ୟାର ସମାଧାନ ସେ କରିଛନ୍ତି— ହେଲେ ଶରୀର ବିଜ୍ଞାନ ସଂପର୍କରେ କାହାକୁ କେବେ ବୁଦ୍ଧି ଦେଇନାହାନ୍ତି ।

— କହ ! ଯୋଉ କାମ ଠାକୁରଙ୍କ ଦେଇ ହେଲାନି— ସେ କାମ ତ ତୁ କରିଦେଲୁ । ତୁ ତ ଆମ ଠାକୁର । ଜିଅନ୍ତା ଠାକୁର । ତୁ ନ କହିଲେ ଆଉ କିଏ କହିବ ? କହ ! ମୋର କ'ଣ ଆଉ ପିଲାଝିଲା ହେବନି ?

— ଫୁଲ ! ତୋ ସ୍ୱାମୀ କ'ଣ ତତେ ଭଲ ପାଏନି ?

— ନା !

— କାହିଁକି ?

— କହିବାକୁ ଲାଜ ମାଡୁଛି !

— ନ କହିଲେ କୌଣସି କଥା ବୁଝି ହୁଏନା ।

— କହିବି ! ତୁଇ ରାଗିବୁ ନାହିଁ ତ ?

— କହ !

ପାଞ୍ଚ ବରଷ ତଳେ— ସେତେବେଳେ ମୋତେ ପନ୍ଦର କି ଷୋଳବର୍ଷ ହେବ । ଆମ ଗାଁରୁ ତିରିଲାସବୁ ବନ୍ଧକାମ କରୁଥିଲୁ । ସେ ବର୍ଷ ଭାରି ଅଭାବ ପଡ଼ିଥାଏ । ଘରେ ଖାଇବାକୁ ନ ପାଇ ଗାଁ ଗଣ୍ଡା ଛାଡ଼ି ଲୋକେ ପଳାଇ ଯାଉଥାନ୍ତି । ପିଛିଲା ସନ ମୋଟେ ବର୍ଷା ହେଲାନି— ସେ ସନ ମଧ ବର୍ଷା ପାଳିଲା ନାହିଁ । ବିଲ ବାଡ଼ି ସବୁ ପଡ଼ିଆ । ସେ ସମୟରେ ଆମ ଗାଁକୁ ବଙ୍ଗାରିଆ ବାବୁଟାଏ ଆସି କହୁଥିଲା— ଦୁର୍ଭିକ୍ଷ ପଡିଛି । ଏଇମିତି କେତେ କ'ଣ କହୁଥିଲା । ସେ କଥା ମୋର ମନେ ନାହିଁ । ଖାଲି ଏତିକି ବୁଝିଥିଲି, ବରଷା ନ ହେଲେ ଫସଲ ହେବନାହିଁ । ଫସଲ ନ ହେଲେ ଆମେ ଭୋକ ଉପାସରେ ମରିଯିବୁ । ସେତେବେଳେ ବି ଘରେ ଘରେ ଉପାସ ।

ଫୁଲଠାରୁ ଦୁର୍ଭିକ୍ଷର କଥା ଶୁଣି ମାନୁବାବୁଙ୍କ ମନରେ ବିଭିନ୍ନ ବିପର୍ଯ୍ୟୟର କଥା ଆଂକି ହୋଇଗଲା । ମାନୁବାବୁଙ୍କ ଜୀବନ ବିପର୍ଯ୍ୟୟ, ବିଦ୍ରୋହ, ବିପ୍ଳବରୁ ଆରମ୍ଭ ହୋଇଥିବାରୁ କାହାର ଦୁଃଖର କଥା ଶୁଣିଲେ ନିଜେ ଦୁଃଖରେ ମ୍ରିୟମାଣ ହୋଇପଡ଼ନ୍ତି । ସାରା ଦୁନିଆଟା ତାଙ୍କୁ ମନେହୁଏ କ୍ଷୁଧାର ଗୋଟାଏ ଖଣ୍ଡିତ ଭୂଗୋଳ ପରି.....

ଫୁଲ ! ହେ ମା ଫୁଲ ! ବାଇଗଣ ବାରିରେ ଛେଳିଟା ପଶିଯାଇଛି— ଜଲଦି ଯାଇ ଟିକେ ଗୋଡ଼େଇ ଦେଇ ଆ ।

ଯାଉଛି ବାଆ..... କହି ଫୁଲ ଅଧା କଥାରୁ ଉଠିଗଲା ।

ମାନୁବାବୁ ମନେମନେ ବହୁ କଥା ଭାବିବାକୁ ଲାଗିଲେ— ଦୁର୍ଭିକ୍ଷ କଦବା କ୍ୱଚିତ୍ ପ୍ରାକୃତିକ ବିପର୍ଯ୍ୟୟ ଯୋଗୁ ହୋଇଥାଏ । ଆଉ ଯେତେ ଦୁର୍ଭିକ୍ଷ ଦେଶରେ ଦେଖାଦେଇଛି, ତାହା ବହୁସମୟରେ ମନୁଷ୍ୟକୃତ । କାହାର କାହାର ମନେଥାଇପାରେ— ୧୯୪୨-୪୩ ଦୁର୍ଭିକ୍ଷର କରୁଣ କାହାଣୀ । ଅବିଭକ୍ତ ବଙ୍ଗଳା ପ୍ରଦେଶରେ ସବୁଠୁ ବେଶୀ ଦୁର୍ଭିକ୍ଷର ପଦଧ୍ୱନି ଶୁଣାଯାଇଥିଲା । ମୁନ୍ଦାଏ ପେଜ ପାଇଁ ଅନାହାରକ୍ଲିଷ୍ଟ କଙ୍କାଳସାର ମଣିଷମାନେ ବାରମ୍ବାର ବାରଦ୍ୱାର ଘୂରି ବୁଲିଥିଲେ । ପେଜ ଭିକ୍ଷା ମିଳିବା ବି ସାତ ସପନ ହୋଇପଡ଼ିଲା ।

'୪୨-'୪୩ ମସିହା ଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧର ଦାରୁଣ ଦୁଷ୍କାଳ । ତମାମ୍ ପୃଥିବୀର ରାଜନୈତିକ ପରିସ୍ଥିତି ଏକ ନୂତନ ମୋଡ଼ ନେବା ଅପେକ୍ଷାରେ । ଦକ୍ଷିଣ-ପୂର୍ବ ଏସିଆରେ ଘମାଘୋଟ ଲଢ଼େଇ ଚାଲିଛି । ବ୍ରିଟେନ୍ ଓ ତା'ର ମିତ୍ର ଶକ୍ତିର ଘାଟୀ ଉପରେ ଜାପାନ ପ୍ରଚଣ୍ଡ ଆକ୍ରମଣ କରି ଜନଜୀବନକୁ ଧ୍ୱସ୍ତ ବିଧ୍ୱସ୍ତ କରିପକାଉଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ୧୯୩୯ ମସିହାରୁ ୧୯୪୫ ମସିହା ପର୍ଯ୍ୟନ୍ତ ୟୁରୋପ, ଏସିଆ, ଆଫ୍ରିକା ମହାଦେଶରେ ଘଟିଯାଇଛି । ଜର୍ମାନୀରେ ହିଟଲର୍‌ର 'ନାଜିବାଦ' ଏବଂ ଇଟାଲୀରେ ମୁସୋଲିନୀର 'ଫାସିବାଦ'ର ଐକ୍ୟ ଏବଂ ସେମାନଙ୍କର ବିଶ୍ୱଜୟର ଈପ୍‌ସିତ ଲକ୍ଷ୍ୟ । ସହଯୋଗ ଦେଲା ଜାପାନ । ଅନ୍ୟପକ୍ଷରେ ଏହି ଫାସିଷ୍ଟ ଶକ୍ତି ଗୁଡ଼ିକୁ ପରାହତ କରିବା ପାଇଁ ଇଂଲଣ୍ଡ, ଆମେରିକା, ସୋଭିଏତ୍ ୟୁନିୟନ୍ ତଥା ଚର୍ଚ୍ଚିଲ, ରୁଜ୍‌ଭେଲ୍ଟ, ଷ୍ଟାଲିନ୍‌ଙ୍କ ମିଳିତ ନେତୃତ୍ୱରେ ଗଢ଼ିଉଠେ ଗୋଟାଏ ମେଣ୍ଟ । ଯୁଦ୍ଧରେ ଅବଶ୍ୟ ଷ୍ଟାଲିନ୍‌ଙ୍କ ନେତୃତ୍ୱରେ ହିଟଲର୍‌ର ପରାଜୟ ହେଲା । କିନ୍ତୁ ସେତେବେଳେ ଇଂଲଣ୍ଡ ଯେହେତୁ ଆମର ପ୍ରିୟ ଭାରତବର୍ଷକୁ ପରାଧୀନ କରି ଶାସନ କରୁଛି—ଯୁଦ୍ଧରେ ଭାରତବର୍ଷରୁ ଖାଦ୍ୟପଦାର୍ଥ ସମେତ ଯୁଦ୍ଧ ଉପକରଣ ବୋହି ନେଉଥିଲା । ଜାପାନର ପ୍ରଚଣ୍ଡ ଆଘାତରେ ବ୍ରିଟିଶ ଅଫିସରମାନେ 'ପୋଡ଼ାମାଟି ନୀତି' ଚାଲୁ କରି ବଙ୍ଗର ନୌକାଗୁଡ଼ିକୁ ଖାଦ୍ୟଶସ୍ୟ ବହନ କରିବା ପାଇଁ ନିଯୁକ୍ତ କଲେ । ସେତେବେଳେ କିଛି ବ୍ୟବସାୟୀ ଠିକାଦାର ଚାଉଳ ସଂଗ୍ରହ କରି ପଠାଉଥିଲେ । ବ୍ରିଟିଶ

ହାକିମମାନଙ୍କ ଆଦେଶରେ ଜବରଦସ୍ତ ଲୋକଙ୍କ ଘରୁ ଚାଉଳ ଗହମ ବୋହିନେଲେ । ଠିକାଦାର ବ୍ୟବସାୟୀମାନଙ୍କର ପୁଷମାସ ସାଧାରଣ ଲୋକଙ୍କ ପକ୍ଷରେ ସର୍ବନାଶ ହୋଇଗଲା । କଲିକତାର ଶିଳ୍ପାଞ୍ଚଳରେ ଯୁଦ୍ଧ ସାମଗ୍ରୀ ପ୍ରସ୍ତୁତ କରୁଥିବା ଶ୍ରମିକମାନଙ୍କୁ ଖାଦ୍ୟ ଯୋଗାଇବାକୁ ହେବ । ସୈନିକମାନଙ୍କୁ କୌଣସି ଜିନିଷରେ ଊଣା କଲେ ଚଳିବନି । ଦଲାଲ ଓ ଠିକାଦାରମାନେ ଗାଁ ଗଣ୍ଡାରୁ ଚାଉଳ ବସ୍ତା ସବୁ ବୁହାଇନେଲେ । ମୁଠେ ଭାତ ମୁନ୍ଦେ ପେଜ ପାଇଁ ଚାରିଆଡ଼େ ହାହାକାର ପଡିଗଲା । ଗାଁ ଗଣ୍ଡାର ଲୋକେ ଗାଁ ଛାଡ଼ି ସହରକୁ ଧାଇଁଲେ । ସହରରେ ବ୍ରିଟିଶ ସରକାର ଓ ତା'ର ଦଲାଲମାନେ ଗୋଦାମ ଭର୍ତ୍ତିକରି ଖାଦ୍ୟ ମହଜୁଦ ରଖିଥିଲେ । ଠିକାଦାର ବ୍ୟବସାୟୀମାନେ ଲୁଚାଛପାରେ ଆକାଶଚୁମ୍ବୀ ଚଡ଼ାଦରରେ ଚାଉଳ ବିକ୍ରିକରି ଟଙ୍କାର ପାହାଡ଼ ସୃଷ୍ଟି କଲେ । ରାସ୍ତାକଡ଼ରେ ଅନାହାରକ୍ଲିଷ୍ଟ ଜନସାଧାରଣଙ୍କର ସମାଗମ । ପ୍ରତିମୁହୂର୍ତ୍ତରେ ଶବ ଶୋଭାଯାତ୍ରା । ପଚା ଶବର ଦୁର୍ଗନ୍ଧରେ ରାସ୍ତାଘାଟ ଭରିଗଲା । ମାଳମାଳ ଲୋକ ପ୍ରାଣ ବିକଳରେ ତେନ୍ତୁଳି ପତର ସିଝାଇ ଖାଇଲେ । ସେଥିରେ କି ଭୋକ ମରିବ ! ଏହା ଥିଲା ଐତିହାସିକ ମହାଦୁର୍ଭିକ୍ଷ—ବ୍ରିଟିଶ ସାମ୍ରାଜ୍ୟବାଦ ଓ ଦଲାଲ ଠିକାଦାରମାନଙ୍କର ସମ୍ମିଳିତ ମନୁଷ୍ୟକୃତ ଦୁର୍ଭିକ୍ଷ ।

ଆଜି ସ୍ୱାଧୀନ ଭାରତବର୍ଷରେ ଓଡ଼ିଶାର କଳାହାଣ୍ଡିର ଦୁର୍ଭିକ୍ଷ—ମଣିଷ ଯେଉଁଠି ପଣ୍ୟ ହୋଇଛି, ୪୨-୪୩ ମସିହା ଦୁର୍ଭିକ୍ଷର ଏକ ଆଧୁନିକ ରୂପ । ଏଇ ପୃଥିବୀରେ କ୍ଷୁଧାର ତାଡ଼ନାରେ ମଣିଷ କେତେ ଯେ ଅକାର୍ଯ୍ୟ କରିଛି, ତା'ର କଳନା ନାହିଁ । ଇଜ୍ଜତ ବରବାଦ କରିଛି । ଦେହ ବିକ୍ରି କରିଛି । ତଥାପି କ୍ଷୁଧା ମେଣ୍ଟି ନାହିଁ । ଆଜି ବି କ୍ଷୁଧା ମେଣ୍ଟାଇବା ପାଇଁ ଗର୍ଭଧାରିଣୀ ମା' ତା'ର ଶିଶୁ ପୁତ୍ରକୁ ମାତ୍ର କୋଡ଼ିଏ ଟଙ୍କାରେ ବିକି ଦେଇଥିବାର ଖବର ଶୁଣିବାକୁ ମିଳୁଛି । ଏ ଘଟଣା ସୋମାଲିଆରେ ଘଟିନାହିଁ, ଘଟିଛି ଖୋଦ୍ ଆମରି ରାଜ୍ୟରେ । ଏହି ଘଟଣା ମଧ୍ୟଯୁଗୀୟ ବର୍ବରତା ଠାରୁ କୌଣସି ଗୁଣରେ କମ୍ ନୁହେଁ ।

ଏଇଭଳି କେତେ ଅଘଟଣ ଘଟିଚାଲିଛି । ସବୁ କ'ଣ ଲୋକଲୋଚନକୁ ଆସୁଛି ? ଘଟଣା ଘଟିବା ରାଜ୍ୟରେ ହୁଏତ ମାନବିକ ପ୍ରତିକ୍ରିୟା ଯେଭଳି ପ୍ରକାଶ ପାଇବା କଥା ପାଇ ନ ପାରେ; କିନ୍ତୁ ଏଇ ଅପମାନଜନକ, ଲଜ୍ଜ୍ୟାଜନକ ସମ୍ବାଦ ଦେଶବିଦେଶର ଯେଉଁ ଶୁଭବୁଦ୍ଧି ସଂପନ୍ନ ମଣିଷ ପାଖରେ ପହଞ୍ଚିଛି ସେ ଲଜ୍ଜ୍ୟା ଘୃଣା ଅନୁଭବ କରିବାକୁ ବାଧ୍ୟ ହେବ । ଆମ୍ଭେମାନେ ସୁରକ୍ଷିତ

ଗୃହ ମଧ୍ୟରେ ଦୂରଦର୍ଶନରେ ବର୍ତ୍ତମାନ ପ୍ରତିଦିନ ଦେଖୁଛନ୍ତି ସୋମାଲିଆରେ ବୁଭୁକ୍ଷୁ ଶିଶୁମାନଙ୍କର ହା-ହାକାର, ଆର୍ତ୍ତନାଦ ଓ ବୀଭତ୍ସ ମୃତ୍ୟୁର ଯନ୍ତ୍ରଣା-କାତର ଦୃଶ୍ୟ । ନୀରବରେ ଦେଶ-ବିଦେଶର ଏସବୁ ବିଭୀଷିକା ଶୁଣି ଦେଖି ଆମେ ସିନା ଚୁପ୍ ହୋଇ ଯାଉଛନ୍ତି, କିନ୍ତୁ ରାଜ୍ୟର ମା' ଭଉଣୀଙ୍କ ଶୋକଭରା କଥା ବାପା ଭାଇଙ୍କର ବୁକୁଭରା ବ୍ୟଥାକୁ ଶୁଣି ଦେଖି କ'ଣ ମୌନ ହୋଇଯିବା ?

ମଣିଷଠାରୁ ମଣିଷ କ'ଣ ଟିକେ ସହାନୁଭୂତି-ସାହାଯ୍ୟ-ସହଯୋଗ ପାଇବ ନାହିଁ ? ସତରେ ଆମେ କ'ଣ ସବୁ ରାକ୍ଷସ ପାଲଟି ଯାଉଛନ୍ତି ?

ମାନୁବାବୁ କ୍ଷୁଧାର ତାଡ଼ନା କଥା ଚିନ୍ତା କରୁଥିଲା ବେଳେ ଫୁଲ ଘର ଭିତରକୁ ପଶିଆସି ପୁଣି କଥାର ଖିଅ ଧରିଲା ।

ଜାଣିଲ ବାବୁ ! ବନ୍ଧ କମରେ ଦି'ଟଙ୍କା ଲେଖାଁ ମଜୁରୀ ପାଉଥିଲୁ । ମୁନ୍‌ସୀ ବାବୁ ! ଯିଏ ଆମକୁ କାମ କରାଉଥିଲା ସେ ଲୋକଟାକୁ ଦେଖିଲେ ଭାରି ଭୟଙ୍କର ଲାଗେ । ରଙ୍ଗଟା ସିନା କଳା— ସବୁବେଳେ ଧଳାଲୁଗା କାମିଜି ପିନ୍ଧେ । ଢୋଲପଥର ବନ୍ଧର କାନତରାଟି ବୋଲି ସବୁଲୋକ ତାକୁ ଜୁହାର ହୁଅନ୍ତି ।

ମାନୁବାବୁ ସେହି ମୁନ୍‌ସୀ ବାବୁ ଓରଫ୍ ବନ୍ଧକାମର କଣ୍ଟ୍ରାକ୍ଟରଙ୍କ ମ୍ୟାନେଜରକୁ ଜାଣିଛନ୍ତି । ହାଣ୍ଡିକଳାଠାରୁ ଆହୁରି କଳା । ଦେହସାରା ପ୍ରଚୁର

ବାଳ । ମୁଣ୍ଡଟା 'ସାଇବାବା'ଙ୍କ ଭଳି । ଚେପଟା ନାକ ତଳକୁ 'ରାବଣ'ର ନିଶ । ନିଶ ସଙ୍ଗରେ ଲାଗିଯାଇଛି କେଉଁ ଏକ ପୁରାଣର ସେନାପତିଆ କଲି । ଚେହେରାଟା କିମ୍ଭୂତ କିମାକାର । କେବେ ସେ ଗାଁ ଥିଏଟରରେ ଭାଲୁ ରୋଲ କରିଥିଲା । ସେହିଦିନ ଠାରୁ ଶ୍ରଦ୍ଧାରେ ହେଉ କିମ୍ବା ପ୍ରକୃତିଗତ ହେଉ ଗାଁ ପିଲାମାନେ 'ଭାଲୁ' 'ଭାଲୁ' ଡାକନ୍ତି । ସେହି ନାଁଟା ରହିଯାଇଛି । ସେଇ ଭାଲୁବାବୁ ଏଇ କାମରେ ଠିକାଦାରଙ୍କ ମ୍ୟାନେଜର ।

ଜାଣିଲୁ ବାବୁ ! ଦିନେ ମାଟି ବୋହୁଥିଲି । ମୁନ୍‌ସୀ ବାବୁଟା କହିଲା— ଅଫିସ୍ ଘରେ ମୂଷା ଗାତ କରି ଦେଇଛି । କାନ୍ଥରୁ ମାଟି ଝଡ଼ିଗଲାଣି । ଦି' ଜଣ ଝିଅ ମୂଷାଗାତ ବନ୍ଦ କରି କାନ୍ଥ ଲିପି ଦିଅ । ତୁମକୁ ଜଣକା ଚାରିଟଙ୍କା ଲେଖା ମଜୁରୀ ଦେବି ।

ମୁଁ ଭାବିଲି— ଅଳ୍ପ କାମକୁ ଡବଲ ମଜୁରୀ । ମୋର ଆଉ ଜଣେ ବଉଳକୁ ଡାକି ଦି' ଜଣ ଯାକ ଅଫିସ୍ ଘର କାମକୁ ଗଲୁ । ସେ ମାଟି ତାଡୁଥାଏ । ମୁଁ ବୋହି ଆଣୁଥାଏ । ମୁନ୍‌ସୀବାବୁ ଅଫିସ୍ ଘରେ ବସିଥିଲା— ମୁଁ ବୋଝେ ମାଟି ଆଣି କଣରେ ପକାଇଲି— ସେତେବେଳେ ମୋର ଛାତିରୁ ଲୁଗା ଖସି ଯାଇଥିଲା । ମୋର ସେ ଆଡ଼କୁ ଖିଆଲ୍ ନଥିଲା । ମାଟି ବୋଝ ପକାଇଲା କ୍ଷଣି ବାବୁଟା ମୋ ଛାତିକୁ ଜୋର୍‌ରେ ରଗଡ଼ି ଦେଲା । ତା' ବାଘୁଆ ନଖର ଆକ୍ରମଣରେ ମୋ ହୃଦୟରୁ ଝରଝର ହୋଇ ରକ୍ତ ଝରିଗଲା । ମୋତେ ମାଲୁମ୍ ହେଲା ସତେ ଯେମିତି ଗୋଟିଏ ପଥର ମୋ ଛାତି ଉପରେ ପଡ଼ିଗଲା । ସେ ବାବୁଟା ସାପଭଳିଆ ମୋ ଦିହରେ ଗୁଡେଇ ହୋଇଗଲା । ମୁଁ ତା' ହାତଟାକୁ ଜୋର୍‌କରି କାମୁଡ଼ି ଦେଲି । ରକତ ଖାଲି ପିଚିପିଚି ହେଇ ବୋହିଁ ଗଲା । ମୋ ବଉଳମାନେ ଦଉଡ଼ି ଆସିଲେ— ଆଖପାଖରୁ ଯେତେଟୋକା କାମ କରୁଥିଲେ— ମୁନ୍‌ସୀକୁ କସିକି ମେଞ୍ଚାଏ ମାଡ଼ ଦେଲେ । ସେ ଡରିମରି ପଳାଇଗଲା । ସେହିଦିନ ଠାରୁ ବଉଳମାନଙ୍କ ପାଖରେ ହଲପ କରି ଦେଲି— କୌଣସି ମରଦକୁ ମୋ ଛାତି ଛୁଆଁଇ ଦେବିନି । ବଉଳମାନେ ହସରେ କଥାଟାକୁ ଉଡ଼େଇ ଦେଲେ ।

ଘରକୁ ଆସି ବାପ ଭାଇ ଆଗରେ ସବୁକଥା କହିଦେଲି । ବାଆ ଗାଁରୁ ଦି' ଜଣଙ୍କୁ ନେଇ ଥାନାକୁ ଗଲା । ଦେଖିଲା— ଥାନା ମୁନ୍‌ସୀ ବାବୁ ପାଖରେ ବନ୍ଧକାମ ମୁନ୍‌ସୀବାବୁ ବସି ହସ୍‌ଖୁସ୍ ହେଉଛି । '

ମୋ ବାଆକୁ ଦେଖି ଥାନାବାବୁଟା ଗର୍ଜି ଉଠିଲା—କହିଲା—ଶଳା ମାଝୀ—ମ୍ୟାନେଜରର ବାବୁଙ୍କ ଅଫିସ୍ ଘର ଭାଙ୍ଗି ଦେଇଛ । ମ୍ୟାନେଜରବାବୁଙ୍କୁ ଟୋକା ଲଗେଇ ମାଡ଼ ମାରିଛ । ଶଳାର ଗୋଡ ହାତ ବାନ୍ଧି ଲକପ୍‌ରେ ପକେଇଦିଅ ।

ବେଦର ଗାର ଭଳି ଥାନାବାବୁଙ୍କ କଥାକୁ ମାନି ଦି'ଜଣ ସିପେଇ ମୋ ବାଆକୁ ହାତକଡ଼ି ପକାଇ କଙ୍କାଳକୁ ପିଟି ପିଟି ଲୁହାକବାଟ ଘରେ କଇଦୀ କଲେ । ଗାଁରୁ ଯାଇଥିବା ଭଦ୍ରଲୋକ ଦି'ଜଣଙ୍କୁ ଥାନାରେ ଅଟକ ରଖିଲେ । ଥାନାବାବୁ ଧମକ ଦେଲେ— ମାଣିକ ମାଝୀ ନାଆଁରେ କେଶ୍ ହେଲା— କାଲି ସେ ଜିଅଲ ଯିବ ।

ଜାଣିଲୁ ବାବୁ ! ଏ ଅବିଚାର ଶୁଣି ରାଗରେ ମୁଁ ଥରି ଉଠିଲି । ଯିଏ ଇଜ୍ଜତ ମହତ ନେଲା—ସେ ହସୁଛି—ଥାନାବାବୁ ତାକୁ ଆଦର କରୁଛି— ଯିଏ ଗୁହାରି କରିବାକୁ ଗଲା— ସେ ଜିଅଲ ଖଟିବ । ଭାବିଲି ଏଇ ଭଳିଆ ରାଇଜରେ ଆଉ ବଞ୍ଚି ଲାଭ କ'ଣ ? ପିଣ୍ଡରୁ ପରାଣ କାଢ଼ି ନେବା ପାଇଁ ଯଦି କିଛି ସହଜ ଉପାୟ ଥାଆନ୍ତା— ତା'ହେଲେ ସେଇକ୍ଷଣି କାଢ଼ି ନେଇଥାନ୍ତି । ହେଲେ ଜାଣୁଜାଣୁ ମରିବାକୁ ଆମେ ଭାରି ଘୃଣା କରୁ । ବାବୁ ! ବାଘ ସିନା ଶୁଖି ଶୁଖି ମରିଯିବ—କେବେହେଲେ ଘାସ ଖାଇବ ନାହିଁ । ଆମେ ଆଦିବାସୀ, ଆମକୁ ହାତ ପତେଇ ଆସେନା— ଭିକ ମାଗି ଆସେନା । ଆମେ ଭୋକରେ ବରଂ ଛଟପଟ ହୋଇ ମରିଯିବୁ— ମିଛ କହି ପାରିବୁ ନାହିଁ— ଠକି ପାରିବୁ ନାହିଁ । ଆଉ ହଁ— ଅପମାନ ସହ୍ୟ କରିପାରିବୁ ନାହିଁ । ଯିଏ ଆମକୁ ଅପମାନ ଦେବ— ସେ ଯିଏ ହେଉ ତାକୁ ତୀର ମାରିଦେବୁ— ଜିଅଲ ପଛେ ଖଟିବୁ— ଅପମାନ ସହ୍ୟ କରିବା ଆମ ଜାତକରେ ନାହିଁ ।

ଏଇ କଥା କେତେ ପଦ କହିଦେଇ ଫୁଲ ସିଂହୀ ପରି ନିଃଶ୍ୱାସ ପ୍ରଶ୍ୱାସ ନେବାକୁ ଲାଗିଲା ।

ମାନୁବାବୁ ଫୁଲର କ୍ରୋଧ, ଘୃଣା, ଭାବାବେଗ ଲକ୍ଷ୍ୟକରି ଭାବୁଥାନ୍ତି— ସତରେ ଚାରିଗୋଡ଼ିଆ ବାଘ ଭାଲୁ ଅପେକ୍ଷା ଦି'-ଗୋଡ଼ିଆ ମଣିଷ ଗୁଡ଼ାକ ଭାରି ଭୀଷଣ, ଭାରି ଭୟଙ୍କର ।

ଫୁଲ ପୁଣି କଥାର ଖିଅ ଆରମ୍ଭ କରି କହିଲା— ବେଳେବେଳେ ରାତିରେ ସପନ ଦେଖେ ଗୋଟିଏ ରାକ୍ଷସ ମୋ ଆଡ଼କୁ ମାଡ଼ି ଆସୁଛି । ମୋ ଛାତିକୁ

ତା ଛୁରୀ ଭଳିଆ ବାଘୁଆ ନଖରେ ଢାବୁଡ଼ି ଧରୁଛି । ରକ୍ତ ଖାଲି ପିଚ୍ ପିଚ୍ ବୋହିଯାଉଛି । ସେଇ ସପନରେ ମୁଁ ହାଉଳି ଖାଏ । ବେଳେବେଳେ ମୋ ଚେତା ବୁଡ଼ିଯାଏ ।

ତାପରେ ବାଆ ମୋତେ ବାହା କରି ଦେଲା । ଯୋଉଦିନ ଗୋଟିଏ ଘରେ—ଘରଟା ଭାରି ଅନ୍ଧାର ହୋଇଥିଲା— ମୁଁ ଗହଣା ପିନ୍ଧି ବୋହୂ ସାଜି ବିଛଣାରେ ଶୋଇଛି, ବର ସେ ଘର ଭିତରକୁ ଦରଜା ଖୋଲି ପଶି ଆସିଲା । ସେତିକିବେଳେ ମୋତେ ମାଲୁମ୍ ହେଲା— ବରଟା ରାକ୍ଷସ ଭଳି । ବରଟା ବି ସେଦିନ ବହୁତ ଗୁଡ଼ାଏ ମଦ ଖାଇଥିଲା— ତା ପାଟିରୁ ଗନ୍ଧ ବାହାରୁଥିଲା । ସେ ଆସି ଯେମିତି ମୋତେ ଛୁଇଁ ଦେଲା— ମୋ ଦିହରେ ଗୋଟିଏ ସାପ ଗୁଡ଼ାଇ ହେଲା ଭଳିଆ ଜଣାପଡ଼ିଲା । ସାପଟା ଗୁଡ଼ାଇ ହୋଇ ମୋ ଛାତିକୁ ଦଂଶନ କଲାବେଳେ— ବର ହାତଟାକୁ କାମୁଡ଼ି ଦେଲି । ତା' ହାତରୁ ରକତ ବୋହିଲା । ସେ ପାଟି କଲା । ଶାଶୁ, ଶଶୁର ପଚାରିଲେ— କ'ଣ ହେଲାରେ ? ବର କହିଲା— ନା-କିଛି ନୁହେଁ । ଜନ୍ଦାଟାଏ କାମୁଡ଼ି ଦେଲା ।

ତା'ପରେ ଆଉ ବରର ପାଖ ପଶିଲିନି । ସେଦିନ ସେ ଘରୁ ପଳାଇଗଲା— ଫେରୁ ଫେରୁ ଆଠ ଦିନ ହୋଇଗଲା । ତା'ପରେ ଆମେ ଏକାଠି ଗୋଟିଏ ଘରେ ଶୋଇଛୁ—ହେଲେ ବି' ତିନି ମାସେ ପର୍ଯ୍ୟନ୍ତ ତାକୁ ଧରା ଦେଲିନାହିଁ । ମୋ ଦିହରେ ହାତ ଛୁଇଁଲେ ମୁଁ ଚିଇଁକି ଉଠିଲି । ମୁଁ ଥରେ ନିଦରେ ଶୋଇଥିଲି । ସେ ମୋର ଛାତିକୁ କାମୁଡ଼ି ଦେଲା— ରକତ ବାହାରିଗଲା । ଦଶ ବାର ଦିନେ ଯାଇ ଭଲ ହେଲା ।

ଫୁଲ ଛାତିରୁ ଲୁଗାକାଢ଼ି ଦେଖାଇ କହିଲା— ଦେଖିବୁ ବାବୁ ! ଦେଖେ ! ହେଇ ଦେଖେ— ଦାଗଟା ଏ ପର୍ଯ୍ୟନ୍ତ ଅଛି ।

ମାନୁବାବୁ ଫୁଲର ମୁହଁକୁ ଚୁପ୍‌ଚାପ୍ ଚାହିଁଥାନ୍ତି ।

— ଜାଣିଲୁ ବାବୁ ! ଗିରସ୍ତ ମୋର ବର୍ଷେକାଳ ବାହାରେ ବୁଲିଲା । ବର୍ଷକ ପରେ ଗିରସ୍ତ ଘରକୁ ଆସିଲା । ଗାଁର ବୋହୂମାନେ ଏକଥା ଶୁଣି ମୋତେ ବାଟ ବତାଇଲେ । ପୁଣି ଯେତେବେଳେ ଗିରସ୍ତ ମୋ ଦିହ ଛୁଇଁଲା— ମୁଁ ପାଟି କଲିନି । ହେଲେ— ଦିହ ମୋର ସଲସଲ ହେଇଗଲା— ସତେ ଯେମିତି ବିଷ ଚରିଯାଉଛି । ମୁଁ ଛଟପଟ ହେଲି । ଲୁଗାଗୁଡ଼ା ସବୁ ଝାଳରେ ଓଦା

ହୋଇଗଲା । ପୁଣି ସେଇ ମୁନ୍‌ସୀବାବୁର ଚେହେରା ମୋ ଆଖି ଆଗରେ ନାଚିଗଲା ।

ମାନୁବାବୁ ଏକପ୍ରକାର ସ୍ଥିତପ୍ରଜ୍ଞ ହୋଇଯାଇଥିଲେ ।

ପୁଣି ଫୁଲ କହି ଚାଲିଲା— ଜାଣିଲୁ ବାବୁ ! ଏଇମିତି ପାଞ୍ଚବରଷ ବିତିଗଲା । ଖାଲି ଛାତିକୁ ପଥର କରି ସହିଗଲି । ଯେତେ ଗଞ୍ଜଣା, ଅପମାନ-ଅପବାଦ ସବୁ ସହିଛି । ହେଲେ ଆଉ ପାରୁନି । ଶାଶୁଘର ବାପଘର ମୋ ପାଇଁ ସମାନ ।

ଏହି ସବୁ କଥା ଗୁଡ଼ା ଫୁଲ ମୁହଁ ତଳକୁ କରି ମାନସ ଦାସଙ୍କୁ କହିଚାଲିଥିଲା । ଏଥର ଆଖି ଛଳଛଳ କରି ପଚାରିଲା— ମୋର..... ମୋର କ'ଣ ସତରେ ଆଉ ପିଲା ହେବେନି ?

— ପିଲା ହେବା ପାଇଁ କିଛି ଉଦ୍ୟମ କରିଥିଲୁ କି ?

ଫୁଲ କହିଲା —କ'ଣ ଆଉ କରିଥାନ୍ତି ? ଶାଶୁ ଶଶୁର ସ୍ୱାମୀ ସବୁ କିଛି କରି କରି ନୟାନ୍ତ ହୋଇଗଲେ । ବାହାଘରର ଦୁଇବର୍ଷରେ ପିଲା ନ ହେବାରୁ ଦିହରେ ଭୂତପ୍ରେତ ପଶିଯାଇଛନ୍ତି ବୋଲି ଠାକୁରାଣୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ବଳି, ଭୋଗରାଗ ସବୁ କିଛି କଲେ । ଆଖପାଖରେ ଯେତେ ଠାକୁରାଣୀ ଥିଲେ— ବାଘିଆ, ଭଇୟା, ଯୋଗିନୀ, ପେଡିନୀ, ଚଣ୍ଡୀ, ଦୁର୍ଗା, ମଙ୍ଗଳାଙ୍କ ପାଖରେ କୁକୁଡ଼ା ଛେଳି ବଳି, ଆଉ ଚାଞ୍ଚଖାଇ ଠାକୁର ପାଖରେ ମଇଁଷି ବଳି ପକାଇଲେ । ନଡ଼ିଆ, କଦଳୀ, ମିଠାଇ, ଦହି, ଛେନା, ଘିଅ, ଦୁଧ, ଗୁଡ଼, ଅରଣାମୂଳ, ଧୂପ, ସୁନ୍ଦର, ଗଞ୍ଜେଇ, କର୍ପୂର, ଖଇ, ଝୁଣା, ଗୁଗୁଳ, ଭାସ୍କର, ମେଥି, ଯୁଆଣି, ହଳଦିଗୁଣ୍ଡ ଆଉ କେତେକ'ଣ ଆଣି ଭୋଗ ଲଗାଇଲେ । ପୂଜାର ଅଧା ସମୟରେ ଖୋଳକୀର୍ତ୍ତନ, ଢୋଲ, ମାଦଳ, ତାଳ, ଘଣ୍ଟା, ଘୁମୁସ ଖୁବ୍ ଜୋର୍‌ରେ ବାଜିଲା ।

ମାନୁବାବୁ ପଚାରିଲେ— ତା'ପରେ କ'ଣ ହେଲା ?

ଫୁଲ କହିଲା— ମୋତେ ସେହି ଠାକୁରାଣୀ ପାଖରେ ଯେଉଁଠି ଭୋଗ ଥୁଆ ହୋଇଥାଏ, ବଳି ବନ୍ଧା ଯାଇଥାଏ, ବାଜା ବାଜୁଥାଏ, ସେଇଠି ବସିବାକୁ ହେଲା । ଗାଁ ଦେହୁରୀ ସବୁ କାମ କରିବ । ଜଣେ କାଳିସୀ ଲାଗିବ । ଦେହୁରୀ

ପାଖରେ ଜଡ଼ାତେଲରେ ପଚ୍ଚା ଯାଇଥିବା ଲମ୍ବା ବେତ ଥିବ । ଦେହୁରୀକୁ ନୂଆ ଧୋତି, ଗାମୁଛା, ପଇତା ପିନ୍ଧିବାକୁ ଦିଆଯିବ । ସେ ଅଖିଆ ଆସିଥିବ । ପ୍ରଥମେ ଯାହା ବଳି ପଡ଼ିବ— ଦେହୁରୀ ନ ଖାଇଲେ ଆଉ କେହି ଖାଇବେ ନାହିଁ । ବଳି ପଡ଼ା ମାଂସକୁ ରନ୍ଧା ଗଲା ପରେ ଦେହୁରୀ ଖାଇ ତା'ର ପ୍ରଳାପ ଆରମ୍ଭ କଲା । ଖୁବ୍ ଜୋର୍ ବାଜା ବାଜୁବାକୁ ହଠାତ୍ ବନ୍ଦ ହୋଇଗଲା । କାଳିସୀ ବାଜା ବାଜୁଥିବା ସମୟରେ ବାଜାତାଳରେ ଡେଉଁଥିଲା । ବାଜା ବନ୍ଦ ପରେ ଆଣ୍ଠୁମାଡ଼ି କେବଳ ମୁଣ୍ଡ ଖୁବ୍ ଜୋର୍‌ରେ ହଲାଇବା ଆରମ୍ଭ କଲା ।

ଦେହୁରୀ— କିଏ ମା' ଆପଣ ଆସିଛନ୍ତି ?

କାଳିସୀ— ମୁଁ ମଙ୍ଗଳା ଆସିଛି ।

ଦେହୁରୀ— ରୋଗ ବଇରାଗ, ଭୂତ, ପ୍ରେତ ଗାଁରୁ ବାହାର କର ।

କାଳିସୀ— ତୁମେ ଯଦି ଶାନ୍ତି-ଶୃଙ୍ଖଳାରେ ରହିବ ମୋ ଭୋଗ ବୋଦା, ଗଞ୍ଜା ଦେବାକୁ ହେବ ।

ଦେହୁରୀ— ଆଜି ଯେଉଁ ଆୟୋଜନ ହୋଇଛି— କେବଳ ଜଣଙ୍କର ଦୁଃଖ ଘୁଞ୍ଚିବା ପାଇଁ । କ'ଣ ମା' ତା' ଦୁଃଖ ଯିବ ତ ?

ହଠାତ୍ କାଳିସୀ ଡ଼େଇଁପଡ଼ି ଦେହୁରୀ ଠାରୁ ବେତଟା ଛଡ଼େଇ ନେଇ ଫୁଲକୁ ଦି' ଚାରି ପାହାର ଖୁବ୍ ଜୋର୍‌ରେ ପିଟି ପକାଇଲା ।

ଫୁଲ ଚିତ୍କାର କରି ଉଠିଗଲା ବେଳକୁ ତିନି ଚାରିଜଣ ତାକୁ ମାଡ଼ି ବସିଲେ ।

କାଳିସୀ କହିଲା— ଏଇ ଖୁଣ୍ଟରେ ତା' ଗୋଡ଼ହାତ ବାନ୍ଧିଦିଅ । ତାକୁ ଭୂତ ଲାଗିଛି । ଏଇ ବେତରେ ତାକୁ ପିଟିପିଟି ଭୂତ ଛଡ଼ାଇବି ।

ସଙ୍ଗେ ସଙ୍ଗେ ଫୁଲକୁ ଜବରଦସ୍ତ ଖୁଣ୍ଟରେ ବାନ୍ଧିଦେଲେ । ବାଜା ଜୋର୍‌ରେ ବାଜିଲା । ସେଠାରେ ରୁଣ୍ଡ ହୋଇଥିବା ଲୋକମାନେ କୁହାଟ ଛାଡିଲେ । ଦେହୁରୀ, କାଳିସୀ ଗଞ୍ଜେଇ ଟାଣିଲେ । କାଳିସୀ ହସି ହସି ଫୁଲକୁ ଖୁବ୍ ଜୋର୍‌ରେ ବେତରେ ପିଟିବାକୁ ଲାଗିଲା । ଫୁଲ ଯନ୍ତ୍ରଣାରେ ଛଟପଟ ହୋଇ ଚିତ୍କାର କଲା— ହଁ, ହଁ— ଭୂତ ଛାଡ଼ିଗଲା ।

ସମସ୍ତେ ଜୟଜୟକାର କଲେ । ଫୁଲ ମୁକୁଳିଲା । ତାକୁ ଘରକୁ ଆଣି ବଳିପକା ରନ୍ଧା ମାଂସ ଖାଇବାକୁ ଦେଲେ । ସେଦିନ ଫୁଲ ହାଲିଆ ହୋଇ ଶୋଇ ପଡିଲା । ତା' ସ୍ୱାମୀ ଶୁକୁଟା କାଳିସୀ, ଦେହୁରୀ, ଗାଁ ଲୋକଙ୍କ ଚର୍ଚ୍ଚା କରୁ କରୁ ରାତି ପାହିଗଲା ।

ଫୁଲଠାରୁ ଏ ସବୁ ଅନ୍ଧବିଶ୍ୱାସ କଥା ଶୁଣି ମାନୁବାବୁ ପଚାରିଲେ— ତା' ପର ଦିନ କ'ଣ ହେଲା ?

ଫୁଲ କହିଲା— ସେଇ ଏକା କଥା । ସେଇ ରାକ୍ଷସ, ସେହି ଭୂତ । ସେଇ କାମୁଡ଼ା । ଶାଶୁଘର ଲୋକ କହିଲେ ଭୂତଟା ପୁରାପୁରି ଛାଡ଼ି ନାହିଁ ।

ପନ୍ଦର ଦିନ ପରେ ପୁଣି ଜଣେ ଗୁଣିଆକୁ ଡାକି ଆଣିଲେ । ଗୁଣିଆ ଆଉ ଚେଲା । କଥା ହେଲା— ସେମାନେ ସାତଦିନ ରହିବେ । ସାତ ରାତି ଫୁଲ ରାତିସାରା ଉଜାଗର ରହିବ । ଗୁଣିଆ ଝାଡ଼ିବ । ଭୂତ ଛଡାଇଦେବ । ଗୁଣିଆ ଚେଲା କେବଳ ପ୍ରତିଦିନ ଗୋଟାଏ ଲେଖା କୁକୁଡ଼ା ଖାଇବେ । ଆଠଦିନ ପରେ, ସକାଳୁ ସକାଳୁ ଖାସି ଛେଳିଟିଏ ଓ ବାଟଖର୍ଚ୍ଚ ନେବେ ।

ଛୁଆ ବକଟେ ଆଶାରେ ବିଚରା ଶୁକୁଟା ଏ ସବୁ କଥା ମାନି କରଜପାତି କରି ଆୟୋଜନ କଲା । ଯଥା ସମୟରେ ଗୁଣିଆ କାର୍ଯ୍ୟ ଆରମ୍ଭ କରି 'ଅଷ୍ଟମ ଦିବସର ପ୍ରାତଃକାଳ' ତା'ର ଦକ୍ଷିଣା ନେଇ ଚାଲିଗଲା । କହିଯାଇଥିଲା— ରାତିରେ ଆଉ ଭୂତ ଆସିବ ନାହିଁ ।

ଶୁକୁଟା ଟିକେ ଖୁସି ହୋଇଥିଲା । ହେଲେ ମନ ପୂରା ମାନୁ ନଥାଏ । ରାତିକୁ ଅପେକ୍ଷା କଲା ।

ସେହି ଏକା ଫଳ । ଭୂତ ଗଲା ନାହିଁ । ଠାକୁର, ଭୋଗ, ଦେହୁରୀ, କାଳିସୀ, ଗୁଣିଆଙ୍କ ପିଛା ଯାହା ଖର୍ଚ୍ଚ କରିଥିଲା ସବୁ ବେକାର ହୋଇଗଲା । ମନ ତା'ର ଭାଙ୍ଗିଗଲା ।

ପୁଣି ଶୁକୁଟାକୁ ଗାଁ ଲୋକେ ପରାମର୍ଶ ଦେଲେ । ପୁରୁଣା କାଳିଆ କଥା— ଅନ୍ଧବିଶ୍ୱାସରେ ଆଜିକାଲି ଆଉ କିଛି କାମ ହେଉନି । ଏତେ ତ ଡାକ୍ତର ବାହାରିଲେଣି । ଔଷଧ ଖାଇଲେ ଛୁଆପିଲା ହେଉଛନ୍ତି । ଭାରିଜାକୁ ଡାକ୍ତର ଦେଖା । ଔଷଧ ଖୁଆ ।

ଶୁକୁଟା ଗାଁ ଲୋକଙ୍କ ପରାମର୍ଶ ମାନିଲା । ଦି' ମାସ ପରେ ଟଙ୍କା ପଇସା ଯୋଗାଡ଼ କରି ଡାକ୍ତରଙ୍କ ପାଖକୁ ଗଲେ । ଡାକ୍ତରବାବୁ ପରୀକ୍ଷା ନିରୀକ୍ଷା କରି କହିଲେ— କିଛି ହୋଇନି— ରୋଗ ନାହିଁ କି ଭୂତ ନାହିଁ । ପିଲାଛୁଆ ହେବାର କିଛି ଅସୁବିଧା ନାହିଁ । ତା' ସତ୍ତ୍ୱେ ଏଇସବୁ ଔଷଧ ନେଇ ଖାଅ । ପିଲା ନିଶ୍ଚୟ ହେବ ।

ଡାକ୍ତରବାବୁଙ୍କ ଆଶ୍ୱାସନାଭରା କଥାରେ ଶୁକଦେବ ଫୁଲ ଦୁହେଁ ଖୁସି ହେଲେ । ମୁହଁରେ କ୍ଷଣିକ ପାଇଁ ହସର ଲହରୀ ଖେଳିଗଲା । ଔଷଧ ଆଣି ଖାଇଲେ । ହେଲେ ପୁଣି ଯେଉଁ କଥାକୁ ସେହିକଥା । ଭୂତ ଛାଡ଼ିଲା ନାହିଁ ।

ଭାଗ୍ୟ, ଭଗବାନ, ଅନ୍ଧବିଶ୍ୱାସ— ଏପରିକି ବିଜ୍ଞାନ ବି ଶେଷରେ ଫୁଲ ପାଖରେ ହାର ମାନିଲା । ଶୁକଦେବ ଧରିନେଲା ଫୁଲର ଆଉ ପିଲା ହେବନି— ଆଉ ଖର୍ଚ୍ଚବାର୍ଚ୍ଚ କରି କିଛି ଲାଭ ନାହିଁ ।

ଫୁଲ ବିରସ ବଦନରେ ମାନୁବାବୁଙ୍କୁ କହିଲା— "ଜାଣିଲୁ ବାବୁ ! ମୁଁ ନିଷ୍ଫଳା ବୋଲି ମୋତେ କେହି ଭଲ ପାଇଲେ ନାହିଁ । ଗାଁରେ କଳିଆ ଲୋକେ କହିଲେ— ମୁଁ କାଳେ ବାଂଝ । ମୋ ମୁହଁ ଚାହିଁଲେ ଅମଙ୍ଗଳ । ପ୍ରତି ରବିବାରେ ମୋ ଶାଶୁଘର ପାଖରେ ମେଳା ହୁଏ । ସେହି ମେଳାରେ ଟୀକା ଗୋବିନ୍ଦଚନ୍ଦ୍ର ବୋଲାଯାଏ । ଯେତେବେଳେ ଅପୁତ୍ରିକ ନାରୀ କଥା ପଡେ— ମୁଁ ସମ୍ଭାଳି ପାରେନା । ସେ କଥା ଗୁଡ଼ାକ ଶୁଣିବୁ?— କହି ଫୁଲ ବୋଲିବା ଆରମ୍ଭ କଲା ।

"ଅପୁତ୍ରିକ ନାରୀ ଦେଉଳକୁ ଗଲେ ଦେଉଳେ ଦିଅଁ ଲୁଚଇ
ଅପୁତ୍ରିକ ନାରୀ ମୁଖ ଚାହିଁଗଲେ କାମନା ପୂର୍ଣ୍ଣ ନୁହଁଇ ।
ଅପୁତ୍ରିକ ନାରୀ ଯେ ସ୍ଥାନେ ବସଇ ସେ ସ୍ଥାନ ମାରୁ ବୋଲାଇ
ଅପୁତ୍ରିକ ନାରୀ ଯେ ଡାଳ ଧରଇ ସେ ଡାଳ ଛିଡ଼ି ପଡ଼ଇ ।
ଅପୁତ୍ରିକ ନାରୀ ପିତୃଶ୍ରାଦ୍ଧ ଦେଲେ ପିତୃଲୋକ ନ ଆସଇ
ଅପୁତ୍ରିକ ନାରୀ ଯେ ଦାଣ୍ଡେ ବୁଲିଲେ ବସୁଧା ତାକୁ ଡରଇ ।
ଅପୁତ୍ରିକ ନାରୀ ବୃକ୍ଷ ମୂଳେ ବସେ ବୃକ୍ଷ ଗୋଟି ଜଳି ଯାଇ

ସେ ବୃକ୍ଷରେ ଯେଉଁ ଫୁଲ କଷିମାନ ସେମାନେ ଛିଡ଼ି ପଡ଼ଇ ।

ଅପୁତ୍ରିକ ନାରୀ ଯେ ଜଳେ ପଶଇ ସେ ଜଳ ଶୁଖିଣ ଯାଏ

ଅପୁତ୍ରିକ ନାରୀ ଯେ ସ୍ଥାନେ ବସଇ ସେ ସ୍ଥାନ ଅପବିତ୍ର ହୁଏ ।''

ଫୁଲ ଭଗ୍ନ କଣ୍ଠରେ କହିଲା— ''ଶେଷରେ ସ୍ୱାମୀ ସବୁ ଆଶା ଛାଡି ଦେଇ ମାସେ ହେଲା ଘରୁ ତଡି ଦେଇଛନ୍ତି । ବାପଘରେ ସେହି ଏକଦଶା । ମୋର ତ ପିଲା ହେବନି ବୋଲି ଚାରିଆଡ଼େ ପ୍ରଘଟ ହୋଇଗଲା । ଆଉ ମୋତେ କେହି ବାହା ହେବାକୁ ରାଜି ନୁହଁନ୍ତି । ଭାଇ କହୁଛି—ଫୁଲଟା ଆମ ପାଇଁ ଗଳଗ୍ରହ ! ବାପ ମା' ଜନ୍ମ କରିଛନ୍ତି— କହିବେ କ'ଣ ? ସବୁବେଳେ ମନ ଖରାପ କରି ଅଛନ୍ତି । ସବୁଠୁ ବେଶୀ ବାଧୁଛି କ'ଣ ଜାଣିଲୁ ବାବୁ— ଗାଁ ଲୋକେ ତିନିଥର ପଞ୍ଚାଇତି କଲେଣି । ମୋତେ କାଲେ ଗାଁରୁ ତଡିଦେବେ । ମୁଁ ରହିଲେ ଗାଁରେ ମରୁଡ଼ି ପଡୁଛି । ଗଛରେ ଫଳ ହେଉନି । କୁକୁଡ଼ା ଗୁଡ଼ା ରୋଗରେ ମରିଯାଉଛନ୍ତି । ଛୁଆପିଲାଙ୍କ ଦେହ ଭଲ ରହୁନି । ବୁଢ଼ାବୁଢ଼ୀ ମରିଯାଉଛନ୍ତି । ଯୁଆଡ଼େ ଗଲେ ବି ମୋତେ ଦୂର ଦୂର କରୁଛନ୍ତି । ତୁ କହ ବାବୁ ! ମୋର କ'ଣ ବଞ୍ଚିବାର ଅଧିକାର ନାହିଁ ?''

ମାନୁବାବୁ ସବୁକଥା ଶୁଣି ଗଭୀର ଚିନ୍ତାରେ ପଡ଼ିଗଲେ । ଗୋଟିଏ ପିଲା ଜନ୍ମ କରିବା ସହଜ ନୁହେଁ— ଏଥିପାଇଁ ଆବଶ୍ୟକ ଧୈର୍ଯ୍ୟ, ତ୍ୟାଗ, ଅଭୂତ ପୂର୍ବ ପ୍ରେମ । ପିଲା ଜନ୍ମ ହେଲେ ଦମ୍ପତିଙ୍କୁ ଯେଉଁ ଆନନ୍ଦ ମିଳେ, ତାହା କୌଣସି ଧନ ସହିତ ସମାନ ନୁହେଁ । ପିଲା ଜନ୍ମରେ ପରିବାରର ଯେଉଁ ଭବିଷ୍ୟତର ସ୍ୱପ୍ନ ଥାଏ, ନିଷ୍ଫଳା ଦମ୍ପତି ସେ ସ୍ୱପ୍ନ ଜୀବନସାରା ଦେଖିବା ସମ୍ଭବ ନୁହେଁ ।

ଏଇସବୁ କଥାଗୁଡ଼ା ଭାବିଲା ବେଳେ ମାନୁବାବୁଙ୍କ ମନ ମାନିଲା ନାହିଁ । ତାଙ୍କର ଦୃଢ଼ବିଶ୍ୱାସ ହେଲା— ଫୁଲ ବନ୍ଧ୍ୟା ନୁହେଁ— କେଉଁ ଏକ ଅଜଣାଭୂତ ତାକୁ ମାଡ଼ି ବସିଛି । ସେ ଭୂତ ଆଉ କେହି ନୁହେଁ, ଢ଼ୋଲପଥର ବନ୍ଧକାମ ଠିକାଦାରର ମ୍ୟାନେଜର ଭାଲୁବାବୁ । ଏଇ ରାକ୍ଷସଟା ପାଇଁ ଏକ ନିଷ୍କପଟ ଦମ୍ପତି ଶୁକଦେବ-ଫୁଲର ସଂସାରରେ ନିଆଁ ଲାଗିଯାଇଛି ।

ଫୁଲ ମନରୁ ସେହି ଅଜଣା ଭୂତ ଛଡ଼ାଇବା ଉଦ୍ଦେଶ୍ୟରେ ମାନୁବାବୁ ପଚାରିଲେ— ''ଫୁଲ ! ସବୁକଥା କହିଲୁ । ମୁଁ ସବୁ ଶୁଣିଲି ।''

ଫୁଲ କହିଲା— ବାବୁ— ଜୀବନରେ ପ୍ରଥମ ଥର ପାଇଁ ମୋର ମନକଥା ସବୁ ଖୋଲି କହିଦେଲି ।

— ଗୋଟିଏ କଥା ପଚାରିବି— ସତ କହିବୁ ତ ?

— ବାବୁ ! ମିଛ କିମିତିକା କଥା ମୋତେ ଜଣାନାହିଁ ।

ହଠାତ୍ ମାନୁବାବୁଙ୍କ ମୁଣ୍ଡକୁ ଗୋଟାଏ ବୁଦ୍ଧି ଜୁଟିଲା । ସେ ଭାବିଲେ— ଏତେ ଘଟଣା ପରେ ସ୍ୱାମୀ ସ୍ତ୍ରୀଙ୍କ ବାସ୍ତବ ମିଳନ ହୋଇଛି କି ନାହିଁ ତାହା ଜାଣିବା ଦରକାର ।

— ଫୁଲ ! ଆଚ୍ଛା !! ତୁମ ସ୍ୱାମୀ ସ୍ତ୍ରୀଙ୍କର ମିଳନ ହୋଇଛି !!!

— ବାବୁ ! ସତ କହୁଛି, ଆମର ଆଦୌ ମିଳନ ହୋଇନାହିଁ । ଛୁଇଁଲା ମାତ୍ରକେ ଭୂତ ! ମିଳନ ହେବ କେମିତି ?

ମାନୁବାବୁ ଦୀର୍ଘ ନିଃଶ୍ୱାସ ପକାଇ କିଛି କ୍ଷଣ ଥମ୍‌କରି ରହିଯାଇ ଫୁଲ ମୁହଁକୁ ନିରେଖି ଚାହିଁଲେ— ଫୁଲ ବି ଚାହିଁ ରହିଥାଏ ।

ମାନୁବାବୁ କହିଲେ— ସବୁ ସମାଧାନର ବାଟ ଫିଟିଗଲା । ଏଥର ମୋ କଥା ମାନିଲେ ହିଁ ତୋ'ର ଦୁଃଖ ଯିବ ।

— ସତ କହୁଛୁ ବାବୁ ! ତୁ ଯାହା କହିବୁ ତା' ମୁଁ ଅକ୍ଷରେ ଅକ୍ଷରେ ପାଳନ କରିବି । ଶପଥ କରୁଛି ।

— ମୁଁ ଜାଣେ ଫୁଲ— ତୋ ମନରେ ଦୁଃଖ ବେଦନା ଅଛି— ମା' ହେବାର ପ୍ରବଳ ଆକାଂକ୍ଷା ଜାଗି ଉଠିଛି । କିନ୍ତୁ ଜାଣିରଖ ଫୁଲ— ମଣିଷକୁ ମଣିଷ ପ୍ରେମ କରିବା— ଭଲ ପାଇବା— ସ୍ନେହ ଶ୍ରଦ୍ଧା ମମତା ରଖିବା ଏକାନ୍ତ ଦରକାର । ଗୋଟିଏ ଜୀବନ ଅନ୍ୟ ଏକ ଜୀବନକୁ ପ୍ରେମ କରିବା ଭିତରେ ନାରୀ-ପୁରୁଷ, ସ୍ୱାମୀ-ସ୍ତ୍ରୀର ସହବାସ ମାମୁଲି ବ୍ୟାପାର ହେଲେ ବି ସଂସାର ସର୍ଜନା ପାଇଁ ଦରକାର ନିଶ୍ଚୟ । ସ୍ୱାମୀ-ସ୍ତ୍ରୀକୁ ଏହି ମାମୁଲି ବ୍ୟାପାରରେ ଆନନ୍ଦର ସହିତ ସାମିଲ୍ ହେବାକୁ ପଡ଼ିବ । ବିଲରେ ଧାନ ଫଳେଇବାକୁ ହେଲେ ଯେପରି କଷ୍ଟ ସହି ଚାଷ କରିବାକୁ ହୁଏ, ସେହିପରି ସନ୍ତାନ ଜନ୍ମ କରିବାକୁ ହେଲେ ମା'କୁ ଦଶମାସ ଦଶଦିନ ଗର୍ଭଧାରଣ କରିବାକୁ ପଡ଼େ । ତୁ ପାରିବୁ ଫୁଲ । ଛାତିକୁ ପଥର କରିନେଇ ସବୁ ଦୁଃଖ କଷ୍ଟ ସହ୍ୟ

କରିପାରିବୁ । ସ୍ୱାମୀ-ସ୍ତ୍ରୀର ମିଳନ ଏକାନ୍ତ ଆବଶ୍ୟକ । ସେ ଭୂତ ଫୁତ କିଛି ନୁହେଁ । ସେଦିନ ସେ ମୁନ୍‌ସୀବାବୁଟା ଦୋଷ କଲା— ତୁ କାହିଁକି ଏତେ ଦଣ୍ଡ ଭୋଗିବୁ ? ତୋ' ସ୍ୱାମୀକୁ କାହିଁକି ସେ ଅଘଟଣର ନିଆଁରେ ଜଳାଇ ପୋଡ଼ାଇ ମାରିବୁ ? ତୋ'ର ଦୋଷ କିଛି ନାହିଁ । ମୋ କଥା ମାନ— ଦେଖିବୁ— ଦୁଃଖ ଚାଲିଯିବ ।

— ବାବୁ ! କହୁଚୁ ଯେ— ହେଲେ ମୁଁ ସିନା ବୁଝିଲି ତୋ କଥା ମାନିବି । ସେ କ'ଣ ଆଉ ବୁଝିବ— ମୋତେ ଡାକି ନେବ— ଭାରିଜା ବୋଲି ମାନ୍ୟ କରିବ ?

— ଫୁଲ ! ବ୍ୟସ୍ତ ହୋ'ନା । ତୋ ଗିରସ୍ତ ମୋତେ ଜାଣେ । ଖାଦାନରେ ଜଣେ ଲୁହା ପିଟାଳି ସେ । ସେ ମୋ କଥା ରଖିବ । ମୁଁ ତାକୁ ବୁଝାଇଦେବି । ସେ ନିଶ୍ଚୟ ତୋତେ ଗ୍ରହଣ କରିବ । ଦୁହିଁଙ୍କର ମିଳନରେ ନୂଆଜୀବନ ଫେରିଆସିବ ।

— ତାହେଲେ ବାବୁରେ— ମୋର କ'ଣ ସତେ ନୂଆଜୀବନ ଫେରି ଆସିବ ?

— ହଁ-ହଁ, ତୋର ପୁର୍ନଜୀବନ ଫେରିଆସିବ ।

ବର୍ଷବର୍ଷର ସାଇତା ଦୁଃଖକୁ ଭୁଲିଯାଇ ଫୁଲ ମୁହଁରେ ହୃଦୟ-ଭରା ହସ ଖେଳିଗଲା । ସେ ତା'ର ଅଣ୍ଟାରୁ ଶିଶିଟା ବାହାର କରି ବାବୁଙ୍କୁ ଦେଖାଇ କହିଲା— ତା' ହେଲେ ଏଇଟାର ଆଉ ଦରକାର ନାହିଁ ।

ମାନୁବବୁ ହତବାକ୍ ହୋଇଗଲେ ।

— ଫୁଲ ତୁ ଏ କ'ଣ କରିବାକୁ ଯାଉଥିଲୁ ? ଏଇଟା ଯେ ବିଷର ଶିଶି !

— ହଁ, ମୁଁ ସବୁଦିନ ପାଇଁ ସଂସାରରୁ ଚାଲିଯିବାକୁ ସ୍ଥିର କରି ନେଇଥିଲି ।

— ଏବେ ?

— ହସି ହସି ଫୁଲ କହିଲା— ତୋତେ ପାଇଲି—ନୂଆ ଜୀବନ ପାଇଲି ।

ଆଲୋ ଫୁଲ ! ଶୁଣିଲୁ ଝିଅ— ମାଣିକ ମାଝୀ ଡାକ ଛାଡ଼ିଲା ।

— କ'ଣ ବାଆ ?

— ବାବୁ ପାଇଁ ଶାଗୁଆଡି ତୁଉଣ କରିବା— ତେଲ ମସଲା ଠିକ୍ କର । ମୁଁ ପାରା ଦି'ଟା ମାରୁଛି ।

— ଯାଉଛି ବାଆ । .....ବାବୁ ! ତୁ ମିଟିଂ ସାରି ନିଶ୍ଚୟ ଆସିବୁ । ମୁଁ ମାଉଁସ ରାନ୍ଧୁଚି— ଖାଇବୁ— ବହୁତ୍ ବେଳୁ ଆସିଲୁଣି— ଭୋକ ହେବଣି ।

ମାନୁ ବାବୁ— ମାନୁବାବୁ— ବାହାରେ ଜଣେ କିଏ ଡାକ ଛାଡ଼ି କହିଲେ— ଲୋକସବୁ ଆସିଗଲେଣି । ଆସନ୍ତୁ, ମିଟିଂ ଟାଇମ୍ ହୋଇଗଲା ।

ମାନୁବାବୁ ସଭାସ୍ଥଳରେ ସଙ୍ଗେ ସଙ୍ଗେ ପହଞ୍ଚିଗଲେ ।

ଚାରିଆଡୁ ଲୋକ ରୁଣ୍ଡ ହୋଇଛନ୍ତି । ମାନସବାବୁ ସ୍ୱାଧୀନତା ପୂର୍ବ ଓ ପରବର୍ତ୍ତୀ ଅବସ୍ଥା ସଂପର୍କରେ ଏବଂ ଜନଗଣଙ୍କର ବର୍ତ୍ତମାନ କର୍ତ୍ତବ୍ୟ ନେଇ ଗଭୀର କଥାକୁ ଅତ୍ୟନ୍ତ ସରଳ ଭାଷାରେ ବୁଝାଇଦେଲେ ।

ଶେଷରେ ସ୍ଥିର ହେଲା— ଚାଷୀ କ୍ଷେତ ମଜଦୁରମାନଙ୍କ ସମସ୍ୟା ନେଇ ବ୍ଲକ୍ ଅଫିସ୍‌ରେ ବିକ୍ଷୋଭ ଶୋଭାଯାତ୍ରା ଅଭିଯାନ ଚାଲିବ ।

ପାଟପୁର ଆଜି ଚଳଚଞ୍ଚଳ । ସଂଗ୍ରାମର ଧ୍ୱନିରେ ମୁଖରିତ । କେବଳ ପାଟପୁର ଗାଁ ନୁହେଁ, ପଚାଶ ଖଣ୍ଡ ଗାଁକୁ ନେଇ ପାଟପୁର ଅଞ୍ଚଳ । ଜଙ୍ଗଲ ଭିତରେ ଗାଁଗୁଡ଼ିକ ଏଠି ସେଠି ଛଡ଼ା ଛଡ଼ା ହୋଇ ବିରାଜମାନ କରୁଛି । ଆଧୁନିକ ଶିକ୍ଷା ସଭ୍ୟତା ପହଞ୍ଚି ପାରିନି ସେଠାରେ । ଭାରତ ମାନଚିତ୍ରରେ ପାଟପୁର ଅଞ୍ଚଳ ସରକାରଙ୍କ ଦୃଷ୍ଟିରେ ବୁଦାବୁଦା ଜଙ୍ଗଲ ଭଳି ରହିଯାଇଛି । ପୂତି ଗନ୍ଧମୟ ସମାଜର ଆବର୍ଜନା ସେଠାରେ ପହଞ୍ଚିପାରିନି । ଯାହା କିଛି ପହଞ୍ଚିଛି ପୋଲିସ୍, ବନ ବିଭାଗ କର୍ମଚାରୀ, ଅମିନ, ସୁପରଭାଇଜର, ତହସିଲ କର୍ମଚାରୀ, କଣ୍ଟ୍ରାକ୍ଟରମାନଙ୍କର କଦର୍ଯ୍ୟ, କୁଟିଳ, ଅନ୍ୟାୟ, ଅତ୍ୟାଚାର, ଦୁର୍ନୀତି ଆଉ ପାଶବିକ ପିପାସାର କାମନା । ପାଟପୁର ବନବାସୀଗଣ ବାଘଭାଲୁ ପରି ହିଂସ୍ର ଜନ୍ତୁ ଅପେକ୍ଷା ଏମାନଙ୍କୁ ସବୁଠାରୁ ବେଶୀ ଭୟ କରନ୍ତି ।

ପାଟପୁର ଅଞ୍ଚଳର ପ୍ରାୟ ଦୁଇହଜାର ପରିବାର ମୁଣ୍ଡଝାଳ ତୁଣ୍ଡରେ ମାରି ଅକ୍ଲାନ୍ତ ପରିଶ୍ରମ କରି ଭୂମି ତାଡ଼ିଥିଲେ । ଜମି ପାଇବେ— ଚାଷ କରିବେ— ଫସଲ ଫଳିବ— ଛୁଆପିଲା ବଞ୍ଚିବେ— ଘର ଦ୍ୱାର କରି ସୁଖରେ ରହିବେ । ସରଳ ବନବାସୀ ମଣିଷମାନେ କାହୁଁ ଅବା ବୁଝିବେ ଜାଲ୍ ଜୁଆଚୋରୀ, ସରକାରୀ କଳାଆଇନି କଥା ? ଜମିରେ ହଳ ପକାଇବା ବେଳକୁ ଫରେଷ୍ଟରର ଗାର୍ଡ଼, ପୋଲିସ୍‌ଙ୍କ ଧମକ— "ଶଳା ସରକାର ଜମି—ଦଖଲ କରିଛୁ— ଜେଲ୍‌ରେ ପୂରାଇ ଦେବି ।" ଏମାନଙ୍କ ମାଟିଆ ପୋଷାକ ଦେଖି ସେମାନଙ୍କୁ ବାଘ ଭଳି ମନେ ହୁଏ । କାଗଜବାଘ କବଳରୁ ମୁକୁଳିବା ପାଇଁ ଯାହା କିଛି ମୂଲ ଲାଗି, ବଣ ଫଳମୂଳ ବିକି ରଖିଥିବେ—ତାକୁ "ଭୋଗ" ଆକାରରେ ଅର୍ପଣ କରନ୍ତି । ପରେ ପରେ ତହସିଲ୍ କର୍ମଚାରୀମାନଙ୍କ ତାମସା ଆରମ୍ଭ ହୁଏ । ଜମି ନାଁରେ କରାଇ ଦେବି ବୋଲି କହି ସର୍ବସ୍ୱାନ୍ତ କରି ଦିଅନ୍ତି । ବିଚରା ବନବାସୀଗଣ ପଶୁଭଳି ଜୀବନଯାପନ କରନ୍ତି, କେବଳ ଭୂମି ଖଣ୍ଡକ ଆପଣାର କରିବା ପାଇଁ । ଶେଷରେ ନିରାଶା—ବ୍ୟର୍ଥତା ହିଁ ତାଙ୍କୁ ପୁରସ୍କାର ମିଳେ ।

ସ୍ୱାଧୀନତା ପୂର୍ବରୁ ସେମାନେ ଏକ ପ୍ରକାର ଦୁଃଖେ ସୁଖେ ଚଳି ଆସୁଥିଲେ । ବିଦେଶୀ ବଣିକ ସ୍ୱଦେଶୀ ବଣିକ ହାତରେ ଚାବିକାଠି ଦେଇଦେଲା ।

ତା'ପରେ ଅନେକ ଗୁଡ଼ାଏ ବର୍ଷ ବିତିଯାଇଥିଲେ ସୁଦ୍ଧା ପାଟପୁର ଅଞ୍ଚଳରୁ ଅତ୍ୟାଚାର, ପୋଲିସ୍‌ର ତାଣ୍ଡବ ଲୀଳା ଶେଷ ହେବାକୁ ନାହିଁ ।

ବହୁ ଅତ୍ୟାଚାର ସହ୍ୟ କଲା ପରେ ବନବାସୀଗଣ ମେଳି କରି ଜମି ଜବରଦଖଲ ପାଇଁ ଚିନ୍ତା କରି ବିପ୍ଳବୀ ଦଳ ପାଖରେ ପହଞ୍ଚିଲେ । ବିପ୍ଳବୀ ମାନସ ଦାସ୍ ଆସିଲେ ପାଟପୁର ଅଞ୍ଚଳ ବନବାସୀଙ୍କୁ ଭୂମିଦଖଲ ସଂଗ୍ରାମରେ ଲଢ଼େଇର ଆଦବ କାଇଦା ଶିଖାଇବାକୁ । ମେଳି ହେଲା । ସଂଗଠନ ହେଲା । ବିପ୍ଳବୀ ସଂଗଠନ । ବନବାସୀ ଚାଷୀ ମୂଲିଆ ସଂଘ । ବଞ୍ଚିବାର ଦାବୀ ନେଇ ସଂଗ୍ରାମ ଚାଲିଲା । ବଣ ଜଙ୍ଗଲ ଇନ୍‌କିଲାବ ଜିନ୍ଦାବାଦ୍ ଧ୍ୱନିରେ କମ୍ପି ଉଠିଲା । ବନବାସୀଙ୍କ ବଜ୍ରଗମ୍ଭୀର କମ୍ପମାନ ସ୍ୱର ଲହର ସାଙ୍ଗକୁ ସଶସ୍ତ୍ର ଶୋଭାଯାତ୍ରା— ମରଣ ପଣ ଲଢ଼େଇର ଶପଥ ଦେଖି ଲାଞ୍ଚଖିଆ ଅତ୍ୟାଚାରୀ ପ୍ରଭୁମାନେ ଛିନ୍‌ଛତର ହୋଇଗଲେ । ରକ୍ତପତାକା ପୋତି ବନବାସୀଗଣ ଭୂମିଦଖଲ କରି ସୁନାର ଫସଲ ଫଳାଇଲେ । ଦୀର୍ଘ ପଚିଶ ବର୍ଷ ଧରି ଯେଉଁ ଭୂମି ଖଣ୍ଡିକ ପାଇଁ ନାହିଁ ନଥିବା ଅତ୍ୟାଚାର, ଦୁଃଖ, କଷ୍ଟ ସହ୍ୟ କରି ଗାଁ ଠାକୁର ପାଖରେ କୁକୁଡ଼ା, ଛେଳି, ମଇଁଷି ବଳି ଦେଉଥିଲେ— ପେଟରୁ ଦାନା କାଟି ଭୋଗ କରୁଥିଲେ— ସବୁ କିଛି ପଣ୍ଡ କରିଦେଲା ଚାଷୀ ମୂଲିଆର ମେଳି ।

ପାଟପୁର ବନବାସୀଗଣ ମେଳି କରାମତିକୁ ଅଙ୍ଗେ ଅଙ୍ଗେ ଅନୁଭବ କଲେ । ନ୍ୟାୟ-ଅନ୍ୟାୟ ବୁଝିପାରିଲେ । ଭଲମନ୍ଦ ଜାଣିପାରିଲେ । ମନରୁ ଭୟ ଛାଡ଼ିଲା । ଯନ୍ତ୍ରଣା ଆଉ ମୃତ୍ୟୁକୁ ଜୟ କରିବାକୁ ଶପଥ ନେଲେ । ଧୀରେଧୀରେ ବିଶ୍ୱାସ ତୁଟିଗଲା ଦୀର୍ଘଦିନର କୁ-ସଂସ୍କାର ଠାକୁର ପୂଜାରୁ, ବଳି ଦାନରୁ— ବିଶ୍ୱାସ କଲେନି— ଖାଲି ଘୃଣା କଲେ ଶୋଷକ ଶାସକର ତାହାଳ କୁକୁରଗୁଡ଼ାଙ୍କୁ ।

ମାନସ ଦାସ ବନବାସୀଙ୍କର କେବଳ ନେତା ହୋଇ ରହିଲେନି— ସେମାନେ ତାଙ୍କୁ ସାଥୀ, ସୁହୃଦ, ଭାଇ, ବନ୍ଧୁ, ବିରାଦର ଭଳି ଆପଣାର କରିନେଲେ । ବନବାସୀଙ୍କ ହୃଦୟରେ ମୁକୁଟହୀନ ସମ୍ରାଟର ଆସନ ଦଖଲ କଲେ ସେ ।

ସେଦିନ ବୈଠକ ଚାଲିଥିଲା ବିପ୍ଳବୀ ଦଳର । ପାଟପୁର ଅଞ୍ଚଳରୁ ତିନିଜଣ ଟାଣୁଆ ଲୋକ ସେହି ବୈଠକରେ ନେତାଙ୍କ ପାଖରେ ଅଡି ବସିଲେ— ଆମ ଅଞ୍ଚଳକୁ ଜଣେ ଲଢୁଆ ନେତା ପଠାନ୍ତୁ । ସେ ଆମକୁ ଶିକ୍ଷା ଦୀକ୍ଷା ଦେଇ ଲଢ଼େଇ ତଥା ସଂଗଠନର କୌଶଳ ଶିଖାଇବ । ନହେଲେ ଆମେ ସେ ଅଞ୍ଚଳ ସାରା ମୁରୁଖ ଲୋକ ସବୁକଥା ଜାଣିପାରୁନୁ କି ବୁଝିପାରୁନୁ ।

କିଏ ଯିବ— ବହୁ ଆଲୋଚନା ପରେ ମାନସ ଦାସଙ୍କୁ ପାଟପୁର ଅଞ୍ଚଳକୁ ବିପ୍ଳବୀ ଦଳ ପକ୍ଷରୁ ସଂଗଠନ ପାଇଁ ପଠାଗଲା ।

ଦଳର ନିର୍ଦ୍ଦେଶ ଶିରୋଧାର୍ଯ୍ୟ । ମାନୁବାବୁ ପାଟପୁର ଅଞ୍ଚଳରେ ପହଞ୍ଚି ଗାଁ ଗାଁ ବୁଲିବା ଆରମ୍ଭ କଲେ । ଦିନ ପନ୍ଦରଟା ଭିତରେ ସବୁ ଲୋକଙ୍କ ସହ ଜଣାଶୁଣା ହୋଇଗଲେ । ବୟସ୍କ ଲୋକଙ୍କ ସହ ମିଶି ଅତ୍ୟାଚାର—ଦମନ ପୀଡନର କଥା ଶୁଣିଶୁଣି ମନ ତାଙ୍କର ବିଦ୍ରୋହରେ ପରିପୂର୍ଣ୍ଣ ହୋଇଗଲା । କେବଳ ଜଣେ ବିଦ୍ରୋହ କଲେ ବିଶେଷ କିଛି ହେବନି ଭାବି ସଂଗଠନକୁ କିଭଳି ଶକ୍ତିଶାଳୀ କରାଯିବ ସେଥିପ୍ରତି ଧ୍ୟାନ ଦେଲେ ।

ପ୍ରଥମେ ଜନଗଣଙ୍କୁ ସଂଗଠିତ କରି ବ୍ଲକ ଅଫିସକୁ ଘେରାଉ କରିବା ପାଇଁ ଡାକରା ଦେଲେ— ବିକ୍ଷୋଭ ଶୋଭାଯାତ୍ରା ପାଇଁ ପ୍ରସ୍ତାବ ଦେଲେ । ଏହି ପ୍ରସ୍ତାବରେ ସମସ୍ତେ ରାଜି ହୋଇଯାଇ କାର୍ଯ୍ୟ ଆରମ୍ଭ କରିଦେଲେ ।

ବି.ଡି.ଓ. ଅଫିସରେ ପୁଲିସ ଫଉଜ ଜଗି ରହିଥାନ୍ତି । ଆଖପାଖ ଗାଁ ଗଣ୍ଡାରୁ ଚାଷୀ ମୂଲିଆମାନେ ଦିନ ଦି'ପହର ସୁଦ୍ଧା ରୁଣ୍ଡ ହୋଇଗଲେଣି । ପାଞ୍ଚଶହ ସରିକି ବନବାସୀ ଦୁଇଧାଡ଼ି ବାନ୍ଧି ପତାକା ଓ ଦାବୀଲେଖାଥିବା ପ୍ଲାକାର୍ଡମାନ ଧରି• ସ୍ଲୋଗାନ୍ ଦେଇ ବ୍ଲକ୍ ଆଖପାଖ ଗାଁ, ଛୋଟ ବଜାର ପରିକ୍ରମା କରୁଥିବା ବେଳେ ଝିଅବୋହୂଙ୍କ ଠାରୁ ଆରମ୍ଭ କରି ବୁଢ଼ାବୁଢ଼ୀ, ଛୁଆପିଲା ସଭିଏଁ ଦାଣ୍ଡରୁ ଆସି ଶୋଭାଯାତ୍ରାକୁ ବଧେଇ ଜଣାଉଥାଆନ୍ତି । କେତେକ ମଧ୍ୟ ଶୋଭାଯାତ୍ରା ଅଭିଯାନରେ ସାମିଲ୍ ହୋଇ ସଂଖ୍ୟାବୃଦ୍ଧି କରିବାରେ ଲାଗିଥାନ୍ତି । ମାନୁବାବୁ, ବୁଧୁମୁଣ୍ଡା, ଗଦା ସିଂ, ଦାରୁଣ ମହାନ୍ତ, ବୈଷ୍ଣବ ବେହୁରା ପ୍ରମୁଖ ଶୋଭଯାତ୍ରା ଆଗେ ଆଗେ ଚାଲୁଥାନ୍ତି ।

ହଠାତ୍ ଦାଣ୍ଡ ମଝିରେ ଶୋଭାଯାତ୍ରାକୁ ଅଟକାଇ ମାନୁବାବୁ ଏକ ସଂକ୍ଷିପ୍ତ ଭାଷଣ ଆରମ୍ଭ କରିଦେଲେ । ସେହି ଭାଷଣ ଭିତରେ ଲୋକମୁଖରୁ ଶୁଣିଥିବା କଥାକୁ ଉଦାହରଣ ଦେଇ କହିଲେ— "ମୁକ୍ତି ପାଇଁ ଲଢ଼ିବାକୁ ହେବ । ବିନା ଲଢ଼େଇରେ ବଞ୍ଚିବାର ଦାବୀ ପୂରଣ ହେବନାହିଁ । ଯେମିତି ଗଦା ସିଂହ, ଦାରୁଣ ମହାନ୍ତ ଲଢ଼ିଥିଲେ । ଜବରଦସ୍ତ ଜମି ଦଖଲ କରିଥିବା ଗିରିବାବୁଙ୍କୁ ମାଡ଼ ମାରି ଅଚେତ କରି ଦେଇଥିଲେ । ଗଦା ସିଂର ସ୍ତ୍ରୀ କାଞ୍ଚନଦେବୀ ଗିରିବାବୁ ମୁହଁରେ ପରିସ୍ରା କରିଦେଇଥିଲା । ସେଇ ମୃତପିଇ ମୁଖିଆ ଗିରିବାବୁ ସେଦିନ ବଞ୍ଚିଗଲା । ଭାଇମାନେ, ତୁମେ ସମସ୍ତେ ଚାରିଗୋଡ଼ିଆ ବାଘ ସହ ମୁକାବିଲା କରିଛ । କିନ୍ତୁ ଦି' ଗୋଡ଼ିଆ ଜାନୁଆର ସହ ମୁକାବିଲା କଲେ ତୁମର ଜୟ ହେବ ।"

'ଶେଷରେ ଶୋଭାଯାତ୍ରା ବ୍ଲକ୍ ଅଫିସ୍‌ରେ ପହଞ୍ଚିଲା ବି.ଡି.ଓ.ଙ୍କୁ ସ୍ମାରକପତ୍ର ଦିଆଗଲା । ସେଠାରେ ବିକ୍ଷୋଭକାରୀମାନଙ୍କୁ ମାନୁବାବୁ ଉଦ୍‌ବୋଧନ ଦେଲେ ଏବଂ ଫରେଷ୍ଟ ଅଫିସ୍, ପୁଲିସ୍, ବ୍ଲକ୍ ଅଫିସ୍ ଏପରିକି ଗାଁ ଦଲାଲ ଗୁଣ୍ଡାମାନଙ୍କୁ ସତର୍କବାଣୀ ଶୁଣାଇ ଚାଲିଗଲେ । ପୁଲିସ୍ ଫଉଜଙ୍କ ପାଟିରୁ କଥା ବାହାରୁ ନଥିଲା । ସବୁ ସରକାରୀ ଅଫିସର ଚୁପ୍‌ଚାପ୍ । ମାନୁବାବୁ କହିଥିଲେ— "ଆଜି ଠାରୁ ହୁସିଆର କରିଯାଉଛୁ— ଗରିବ ଲୋକଙ୍କ ଦାନାରେ ଧୂଳି ଦେଲେ ଆମେ କାହାରିକୁ ଛାଡ଼ିବୁ ନାହିଁ । ସେ ପୁଲିସ୍ ହେଉ କି ଫରେଷ୍ଟର ହେଉ । ହାକିମ

ହେଉ କି ଗୁଣ୍ଡା ହେଉ । କେହି ଚାଷୀ ମୂଲିଆଙ୍କୁ ହଇରାଣ କଲେ ତା'ର ମୁକାବିଲା ନିଶ୍ଚୟ ହେବ ।''

ସମସ୍ତେ ସମସ୍ୱରରେ ଗର୍ଜି ଉଠିଲେ— ମୁକାବିଲା— ମୁକାବିଲା ।

ବ୍ଲକ୍ ଅଫିସ୍ ଆଗରେ ବିକ୍ଷୋଭ ଶୋଭାଯାତ୍ରା ଚାଷୀମୂଲିଆଙ୍କ ଆଖି ଫିଟାଇଦେଲା । କଣ୍ଠସ୍ୱରରେ ଲଢ଼େଇର ଆୱାଜ ଶୁଣାଗଲା । ଗାଁ-ଗାଁରେ କମିଟି ହେଲା । ବୈଠକ ହେଲା । ଲୋକଙ୍କ ଦକ ଛାଡ଼ିଲା । ଦମ୍ଭ ଆସିଲା । ପୁଲିସ୍, ଫରେଷ୍ଟ ଅଫିସର ପ୍ରମୁଖ ଯେଉଁମାନଙ୍କୁ ଦେଖିଲେ ସରଳ ଗ୍ରାମବାସୀମାନେ ଭୟରେ ଥରୁଥିଲେ— ସବୁ ଓଲଟ ପାଲଟ ହୋଇଗଲା ।

ମାନୁବାବୁଙ୍କ କଥା— ''ଏଇ ଦୁନିଆଁରେ ଦୁର୍ବଳର ସ୍ଥାନ ନାହିଁ । ଭୟ ମଣିଷର ଶତ୍ରୁ । ଯିଏ ଭୟକୁ ଜୟ କରିବ— ତା'ର ବିପଦ ନାହିଁ । ସଚେତନ ହେଲେ ନିଜେ ନିଜକୁ, ସମାଜକୁ ରକ୍ଷା କରିପାରିବ ।''

ଲୋକଙ୍କ ମେଳିରେ ଭୟ ଛାଡିଗଲା । ଆଉ ଲୋକଙ୍କୁ କୁକୁଡ଼ା, ଛେଳି, ଚାଉଳ, ପରିବା, ଟଙ୍କା ଲାଞ୍ଚ ଦେବାକୁ ପଡିଲା ନାହିଁ । ସେମାନେ ମୁଣ୍ଡ ସିଧା କରି ଚାଲିଲେ । ମାନୁବାବୁଙ୍କର ଅତି ଆପଣାର ଲୋକ ହୋଇଗଲେ । ତାଙ୍କୁ ଗାଁ ଗଣ୍ଡା ଲୋକେ ଆଦର କଲେ ।

ବିକ୍ଷୋଭ ଶୋଭାଯାତ୍ରା ଚାଲିଥିଲାବେଳେ ମାନୁବାବୁ ଗିରିମୁଖିଆ ନାଁରେ ଅପମାନଜନକ ମନ୍ତବ୍ୟ ଦେଇଥିବାରୁ ଆଖପାଖ ଗାଁ ଗଣ୍ଡାରେ ଆଲୋଚନାର ବିଷୟବସ୍ତୁ ହୋଇଯାଇଥିଲା । ଗିରିବାବୁ କାନକୁ ଏ କଥା ଯିବାକ୍ଷଣି ସେ ଗର୍ଜି ଉଠି କହିଥିଲା— ''କାହାର ଜିଭରେ ହାଡ଼ ଅଛି— ସେ ମୋ ନାଁରେ ବଦନାମ କରିବ ? ସେ ଟୋକାକୁ ବାଡ଼େଇ ବାଡ଼େଇ ଏ ଅଞ୍ଚଳରୁ ବିଦା କରି ନଦେଲେ ମୋ ନାଁ ପଚାଶ ଖଣ୍ଡ ଗାଁର ମୁଖିଆ ଗିରି ଗୋବର୍ଦ୍ଧନ ମହା ବଳିଆର ସିଂ ନୁହେଁ କି ମୁଁ ଆଉ କାହାକୁ ମୁହଁ ଦେଖାଇବି ନାହିଁ ।''

ଏକଥା ଶୁଣି ମୁଖିଆ ବୋଲକରା କେତେଜଣ ଜଙ୍ଘରେ ଚାପୁଡ଼ା ମାରି ଡେଇଁ ପଡିଥିଲେ ।

ସକାଳୁ ସକାଳୁ ମାନୁବାବୁ ସହରକୁ ଯିବା ପାଇଁ ଶିବାଦୋକାନ ପାଖରୁ ବସ୍ ଧରିବାକୁ ଆସୁଥିଲେ । ଦୋକାନ ପିଣ୍ଡାରେ ପ୍ରାୟ ସବୁବେଳେ ଦଶବାରଜଣ ଯେଉଁମାନେ ସବୁବେଳେ ପରନିନ୍ଦା ପରଚର୍ଚ୍ଚା କରନ୍ତି, ସେମାନଙ୍କ ଦ୍ୱାରା

ପରିପୂର୍ଣ୍ଣ ଥିଲା। ଗିରି ସିଂକୁ ଘେରି ଆଉ କିଛି ଲୋକ ଠିଆ ହୋଇଥାନ୍ତି।

ମାନୁବାବୁଙ୍କୁ ଦେଖି କିଏ ଜଣେ କହିଲା— ହେଇ-ଆଜ୍ଞା— ସେ ଟୋକା ଇଆଡ଼କୁ ଆସୁଛି।

ସମସ୍ତଙ୍କ ନଜର୍ ମାନସ ଦାସଙ୍କ ଉପରେ। ମାନୁବାବୁ ଯେତେ ପାଖେଇ ପାଖେଇ ଆସୁଛନ୍ତି— ଗିରି ମୁଖିଆର ଆଖି ସେତେ ବଡ଼ ହୋଇ ହୋଇ ଯାଉଥାଏ। ଦାନ୍ତ କଡ଼ମଡ଼ କରି ବାଘ ପରି ଗର୍ଜନ କରି ରଡ଼ି ଛାଡିଲା— ହେ—ଟୋକା ! ଏଠିକୁ ଆ।

ମାନୁବାବୁ ଦୋକାନ ବିପରୀତ ରାସ୍ତା କଡ଼ ବସ୍ ରହିବା ସ୍ଥାନରେ ପହଞ୍ଚି ଯାଇଥିଲେ। ଗିରି ମୁଖିଆର ପିଆଦା ଜଣେ ଆସି ମାନୁବାବୁଙ୍କୁ ଡାକିନେଲା।

ମାନୁବାବୁ ସେଠାରେ ପହଞ୍ଚିଲା କ୍ଷଣି ଗୋବର୍ଦ୍ଧନ ଡେଇଁ ପଡ଼ିବା ଭଳି ଭଂଗୀରେ ଠିଆ ହୋଇ କହିଲା— କିବେ ଟୋକା ! କ'ଣ କାଲି ସବୁ ମୋ ନାଁରେ ଗାଁ ଦାଣ୍ଡରେ ଭାଷଣ ଦେଉଥିଲୁ ? ମୋତେ ଚିହ୍ନିଛୁ କିଏ ? ପିଟିପିଟି ସାବାଡ଼୍ କରିଦେବି।

ଏହି କଥାଗୁଡ଼ା ଗିରି ଏକା ନିଃଶ୍ୱାସରେ କହିଗଲା।

ମାନାବାବୁ କିଛି ଗୋଟେ କାଣ୍ଡକାରଖାନା ଘଟିବ ବୋଲି ସୁରାକ ପାଇଗଲେ। ପ୍ରାୟ ପଚାଶ ଷାଠିଏ ଜଣ ଲୋକ ଜମି ଗଲେଣି। କ'ଣ ଗୋଟାଏ କିଛି ଘଟିବ ବୋଲି ସମସ୍ତେ ଦେଖିବାକୁ ଉଦ୍‌ବିଗ୍ନ। ଯା' ଭିତରେ ମାନୁବାବୁଙ୍କର ଗାଁ ଗଣ୍ଡା ଲୋକମାନଙ୍କୁ ଭୟ ବିରୋଧରେ କହୁଥିବା କଥା ଗୁଡ଼ାକ ନାଚିଗଲା। କୁକୁର କାମୁଡ଼ିବାକୁ ଗୋଡାଇଲେ— ଦଉଡ଼ିବାକୁ ଚେଷ୍ଟା କରିବ ନାହିଁ। ସଙ୍ଗେ ସଙ୍ଗେ ହାତ ଉଞ୍ଚେଇବ କିମ୍ବା ବାଡ଼ି ଉଞ୍ଚେଇଲେ କୁକୁର ଲାଞ୍ଜ ଜାକି ପଳାଇବ। ଜଙ୍ଗଲରେ ହଠାତ୍ ବାଘ ସାମନା ସାମନି ପଡିଗଲେ— ଦଉଡ଼ି ପଳାଇବ ନାହିଁ। ଧୈର୍ଯ୍ୟର ସହ ବାଘ ସଙ୍ଗେ କୌଶଳଗତ ମୁକାବିଲା କରି ହୁଏତ ମରିପାର— ସେ ମରଣ ହେବ ବୀରତ୍ୱର।

ଏଇ ସବୁ କଥା ଭାବୁ ଭାବୁ ଗିରି ସିଂ କଥା ନ ସରୁଣୁ ମାନୁବାବୁ ସମସ୍ପର୍ଦ୍ଧୀ ସ୍ୱରରେ କହିଲେ— ଚୁପ୍ ! କଥା କହି ଆସେନା— ସେଥିରେ ପୁଣି ଏତେ ବହପ ? କାଲି ଦାଣ୍ଡରେ ଯାହା ସବୁ କହିଛି—ସବୁ ସତ— ଦରକାର ହେଲେ ହଜାରବାର କହିବି।

ଗିରି ମୁଣ୍ଡକୁ ପିତ ଚଢ଼ିଗଲା । ସେ ପୁଣି ଗର୍ଜି ଉଠିଲା— ଏଠି ଲଢ଼େଇ-ଆନ୍ଦୋଳନ-ସଭାଫଭା କିଛି ଚଳିବ ନାହିଁ । ଲୋକ ଆମର ଶାନ୍ତିରେ ଥିଲେ— ଏ ଆସିଲା ବିପ୍ଳବୀ ନେତା କେଉଁଠୁ— ଲୋକଙ୍କ ମୁଣ୍ଡ ବିଗାଡ଼ି ଦେଲାଣି । ଏ ଅଞ୍ଚଳରୁ ଆଜି ନଗଲେ ମୁଣ୍ଡଗଣ୍ଡି ଅଲଗା କରିଦେବି । ଆରେ..... ମୋତେ ଚିହ୍ନିନି । ମୋତେ ଦେଖିଦେଲେ ଗର୍ଭିଣୀ ଗାଈ ବାଟ ଭାଙ୍ଗି ଯାଉଛି । ଏ ଆସିଲା ମୋ ମୁହଁରେ ଜବାବ୍ ଦେବାକୁ ନବାବପୁଅ— ମୋତେ ପୁଣି କହୁଛି—ଚୁପ୍ ! କିଏ ଅଛି ବେ— ଲଗା ମାଡ଼ ।

ମାନୁବାବୁ ହାତ ଉଠାଇ କହିଲେ— ହୁସିଆର ! କାହାର ହିମ୍ମତ୍ ଅଛି ତ ଲଗା ହାତ । ସମସ୍ତଙ୍କୁ ସାବାଡ଼ କରିଦେବି । ମୁଁ ଆସିଛି ଯେତେବେଳେ— ଆଉ ଫେରିବି ନାହିଁ— ଏଇଠୁ ମୋର ଲଢ଼େଇ ଆରମ୍ଭ ହେବ । ପୁଂଜିପତିର ଦଲାଲମାନଙ୍କୁ ଏଇ ମାଟିରେ କବର ଦେବୁ ।

ମାନୁବାବୁଙ୍କ ସିଂହନାଦରେ ଉପସ୍ଥିତ ଲୋକେ ଏକପ୍ରକାର ଶଂକି ଗଲେ । ଗିରି ସିଂ ପାଟିରେ ଭାଷା ନାହିଁ । ଏତିକି ବେଳେ ବସ୍‌ଟା ଆସି ପହଞ୍ଚି ଯାଇଛି । ବସ୍ ଭିତରୁ ଦଶବାରଜଣଙ୍କର ଏକାବେଳକେ ମାନୁବାବୁଙ୍କ ପ୍ରତି ନମସ୍କାର-ନମସ୍କାର ସ୍ୱରର ଆୱାଜ ଆସିଲା ।

ମାନୁବାବୁ ବସ୍ ଚଢୁଚଢୁ କହିଗଲେ— ଗିରି ଗୋବର୍ଦ୍ଧନ ବଳିଆର ସିଂ ! ତୋ ଦଳ ବଳ ଅସ୍ତ୍ର ଶସ୍ତ୍ର ନେଇ ତିଆରିଥିବୁ । ମୁଁ ରାତି ୯ଟାରେ ବସ୍‌ରୁ ଏଇଠି ଓହ୍ଲେଇବି । ଯଦି ବାପର ପୁଅ ହୋଇଥବୁ—ମୋ ଦେହରେ ହାତ ଲଗାଇବୁ ।...

ଏତିକିବେଳେ ବସ୍ ଘୁଁ ଘଁ ଶବ୍ଦ କରି ଆଗକୁ ଚାଲିଲା ।

ରାତି ନ'ଟା । ମାନୁବାବୁ ଏକାଏକା ସେହି ଦୋକାନ ପାଖ ବସ୍ ରହଣୀ ସ୍ଥାନରେ ଓହ୍ଲାଇଲେ । ଗିରି ସିଂ ଦଳବଳ କେହି କେଉଁଠି ଦିଶୁନାହାନ୍ତି । ମାନୁବାବୁ ଗନ୍ତବ୍ୟ ସ୍ଥଳକୁ ଚାଲିଗଲେ ।

ପରିଦିନ ସକାଳୁ ଗିରି ସିଂ ମାନୁବାବୁ ଶୋଇଥିବା ଘର କବାଟ ଠକ୍ ଠକ୍ କଲେ । ମାନୁବାବୁ କବାଟ ଖୋଲିଲା କ୍ଷଣି ଦେଖିଲେ— ଗିରି ସିଂ ଏକା ଏକା !

ଗିରି ସିଂ ହସି ହସି କହିଲା— ମାନୁବାବୁ ! ତୁମେ ମୋ ପୁଅ ସମାନ । କାଲି ଏ ବୁଢ଼ାଟା କ'ଣ କହିଦେଇଛି । ପୁଅ ! ସେ କଥାକୁ ଆଉ ଧରିବୁ ନାହିଁ ।

ମାନୁବାବୁ ହସି ହସି କହିଲେ— ହଉ ମଉସା ! ସେ ସବୁକଥା ମୁଁ ଭୁଲିଯିବି ।

ଗିରି ଗୋବର୍ଦ୍ଧନ ଦୋଷୀଟି ଭଳି କହିଲା— ହଉ ପୁଅ— କ'ଣ ଗୋଟେ ବହି ଅଛି ଦିଅ । ପଢ଼ି ଫେରାଇ ଦେବି ।

ମାନୁବାବୁ ଖଣ୍ଡେ ବହି ବୁଢ଼ାକୁ ଧରାଇ ଦେଲେ । ବୁଢ଼ା ସଙ୍ଗେ ସଙ୍ଗେ ମୁଣ୍ଡ ନୁଆଁଇ ଫେରିଗଲା ।

ଥରେ ସେ ଅଞ୍ଚଳରେ ଜରବାଧକରେ ବହୁଲୋକ ଆକ୍ରାନ୍ତ ହୋଇ ନାହିଁ ନଥିବା କଷ୍ଟ ପାଉଥାଆନ୍ତି । କେତେକ ମରିଯାଇ ଥାଆନ୍ତି । ମାନୁବାବୁ ସଙ୍ଗରେ ଆଠ ଦଶ ଜଣ କର୍ମୀଙ୍କୁ ନେଇ କିଛି ପଥ୍ୟ ଔଷଧ ଧରି ଚିକିତ୍ସା କରି ଫେରି ଆସିଲେ ସହରରୁ ଜଣେ ଡାକ୍ତରଙ୍କୁ ନେଇ ସେହି ସ୍ଥାନକୁ ଯିବା ପାଇଁ ।

ଟାଣ ଖରା । ଏମାନେ କିଛି ଖାଇ ନଥିଲେ । ପ୍ରବଳ ଭୋକ ସାଙ୍ଗକୁ ପ୍ରଚୁର ଶୋଷ । ସେମାନେ ଜଙ୍ଗଲ ଭିତରେ ଥିବା ପ୍ରାୟ ପନ୍ଦରଟି କୁଡ଼ିଆରୁ କିଛି ଖାଦ୍ୟ ସଂଗ୍ରହ ପାଇଁ ବହୁ ଚେଷ୍ଟା କଲେ । ବିଫଳ ହେଲେ । କେବଳ ଜଣଙ୍କ ଘରୁ କିଛି ତୋରାଣି ସଂଗ୍ରହ କରି ଭାଗବଣ୍ଟରା କରି ପିଇନେଲେ ।

ସାମାନ୍ୟ ତୋରାଣି ଟୋପେ କି କ୍ଷୁଧା ସମ୍ଭାଳେ ? ଉଦୁଉଦିଆ ଖରାଟାରେ ବାଟ ଚାଲିବା ବି କଷ୍ଟକର । ସେମାନେ ଗୋଟାଏ ତେନ୍ତୁଳି ଗଛ ମୂଳରେ ବିଶ୍ରାମ ନେଲେ । ମୁଚନ ଲୋକବଳେ ବିଶ୍ରାମ ବି ଦେଲ ନେଲାଣି ! ମାନୁବାବୁ ହଠାତ୍ କିଛି ତେନ୍ତୁଳି ପତର ଆଣି ଚୋବାଇ ଚୋବାଇ ଖାଇବାକୁ ଆରମ୍ଭ କଲେ— ତାଙ୍କ ଦେଖାଦେଖି ସମସ୍ତେ ତେନ୍ତୁଳି ପତର ଆଣି ଖାଇଗଲେ । ଟିକେ ଦୂରରେ ଆଦିବାସୀ କୁଡ଼ିଆକୁ ଯାଇ ସମସ୍ତେ ଆକଣ୍ଠ ଜଳପାନ କଲେ ।

ଏହି ଘଟଣା ଲୁଚି ରହିଲା ନାହିଁ । ଆଦିବାସୀ ମଣିଷମାନେ ମାନୁବାବୁଙ୍କୁ ଆହୁରି ଆଦର କରିବାରେ ଲାଗିଲେ ।

ସେଦିନ ମାନୁବାବୁ ଖବର କାଗଜ ଉପରେ ଆଖି ବୁଲାଉଥିଲେ । ତିନିଜଣ କଳା କିଟିକିଟି ଲୋକ । ପ୍ରତ୍ୟେକଙ୍କର ଦୁଇଟି ମଳିଛିଆ ଗାମୁଛା ଥିଲା ପରିଧାନ । ସେମାନଙ୍କୁ ସହରୀ ଭାଷାରେ ମଳିମୁଣ୍ଡିଆ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେମାନେ ପୁଳାଏ କାଗଜ ଧରି ମାନୁବାବୁଙ୍କ ପାଖକୁ ଆସିଲେ । ହଠାତ୍ କିଛି କହି ନପାରି ଚୁପ୍ ହୋଇ ଠିଆହେଲେ ।

ମାନୁବାବୁ ପଚାରିଲେ— କୁଆଡ଼େ ଭାଇ ! କାହାକୁ ଖୋଜୁଛ ? ଜଣେ ସାହସ ବାନ୍ଧି କହିଲା— ଏଠି ବାବୁ ଜଣେ ଅଛି ଯେ— ତାରି ପାଖକୁ ଆସିଚୁ ।

— କୋଉ ବାବୁ ?

— ନେତା ବାବୁ ଜଣେ— ଲଢୁଆ ବାବୁ । ଆମ ଗରିବ ଲୋକଙ୍କ ପାଇଁ ମେଳି କରୁଛି । ଲଢୁଛି ।

— ତାଙ୍କ ନା' କ'ଣ କୁହ ?

— ବାବୁ — ମନେ ପଡୁନି ।

ଜଣେ କହିଲା — ମାନୁ ବାବୁ !

ଆଚ୍ଛା-ଆଚ୍ଛା ! ମୁଁ ସେଇ ମାନୁବାବୁ । କ'ଣ କୁହ !

ତିନିଜଣଯାକ ମୁଣ୍ଡ ନୁଆଁଇ ଜୁହାର ହେଲେ । ଜଣେ କାଗଜ ବିଡ଼ାଟା ବଢ଼ାଇ ଦେଇ କହିଲା— ବାବୁ ! ତୋ ପାଖକୁ ଦରଖାସ୍ତ ଆଣିଚୁ । ତୁ ବୁଝ !

ମାନୁବାବୁ କାଗଜ ବିଣ୍ଡାଟା ଖୋଲୁ ଖୋଲୁ କହିଲେ— ମୁଁ କ'ଣ ହାକିମ ହୋଇଛି ଯେ ମୋତେ ଦରଖାସ୍ତ ଦେଉଛ !

ସେମାନେ କିଛି ନ କହି ନୀରବ ରହିଲେ । ମାନୁବାବୁ ଦରଖାସ୍ତ କେତେଖଣ୍ଡ ପଢ଼ି ସାରି କହିଲେ— ଆଶ୍ଚର୍ଯ୍ୟ ! ମଧୁ ମହାନ୍ତି ତୁମମାନଙ୍କୁ ଏଭଳି ଭାବେ ଠକି ଦେଇଛି—ଯାହା ଲେଖିଛ ସବୁ କ'ଣ ସତ ?

ବୁଢ଼ା ଲୋକଟି କହିଲା— ବାବୁ ! ସବୁ ସତ ।

ପ୍ରାୟ ଦେଢ ଶହ ଦରଖାସ୍ତରୁ ଆନୁମାନିକ ହିସାବ— ମଧୁ ମହାନ୍ତି ଜମି କରେଇ ଦେବା ପାଇଁ ଛଅ ବର୍ଷ ଭିତରେ ଷାଠିଏ ହଜାର ଟଙ୍କା ଲାଞ୍ଚ ନେଇଛି । ଜମିର ନାଁ ଗନ୍ଧ ନାହିଁ ।

— ଆଚ୍ଛା ! ତହସିଲଦାର ପାଖକୁ ଜମି ବିଷୟରେ କେବେ ଯାଇଛ ?

ଉତ୍ତର ମିଳିଲା— ହଁ ବାବୁ ! ଫି ମାସରେ ଯାଉ । ତହସିଲଦାର ବାବୁ ଆମକୁ ଦେଖିଲେ ଅଫିସ୍‌ରୁ ପଦାକୁ ବାହାରି ଆସନ୍ତି । ମଧୁ ମହାନ୍ତିଙ୍କୁ ନମସ୍କାର କରି କହନ୍ତି— ତୁମେମାନେ ବ୍ୟସ୍ତ ହୁଅ ନାହିଁ । ମଧୁବାବୁ ଯେତେବେଳେ ତମ ପାଇଁ ଲଢୁଛନ୍ତି ଜମି ତମର ହେବ । ସରକାରୀ କାମ—ଖାତା ଖତିଆନରେ ନାଁ ଉଠିବ । ମାପ ଚୁପ ହେବ । ଏ ସବୁ କାମ ସରିଲେ ତମମାନଙ୍କ ନାଁରେ ନିଶ୍ଚୟ ଜମି ଖାତାରେ ଉଠିବ । .....ସେ ଏମିତି ପାଞ୍ଚ ବର୍ଷ ହେଲା କହିଲାଣି— ଜମି କିଏ ନା ଆମେ କିଏ ! ପୁଣି ଦି'ଦିନ ପରେ ମଧୁ ମହାନ୍ତି କହିଛି— ଜଣକା ଶହେ ଟଙ୍କା ଲେଖେଁ ନେଇ ତହସିଲଦାରଙ୍କୁ ଭେଟିବା ପାଇଁ ।

— ମଧୁ ମହାନ୍ତିଙ୍କୁ ଟଙ୍କା ଦେଇ ଦେଲଣି ?

— ନାଁ ବାବୁ ! ଛେଳି କୁକୁଡ଼ା ବିକି ପଥରକାଟି କିଛି ଟଙ୍କା ଯୋଗାଡ଼ କରିଛୁ । ହାଟକୁ ଯାଇଥିଲୁ ଯେ— ସେଠୁ ତୋ ନାଁ ଶୁଣି ଆସିଛୁ ।

— ଠିକ୍ ଅଛି ! ମଧୁ ମହାନ୍ତିକୁ ଟଙ୍କା ଦେବନି ; ଦି' ଦିନ ପରେ ମୁଁ ବି ତହସିଲ୍ ଅଫିସ୍‌କୁ ଯିବି । ତମେ ମୋତେ ପରିଚୟ ଦେବନି । ମଧୁ ମହାନ୍ତି ମଧ୍ୟ ମୋତେ ଚିହ୍ନିନାହିଁ । ସେଠାରେ ଦେଖିବା କୋଉ ତହସିଲଦାର ବାବୁ ଆସି ତମକୁ କହିବ । ସିଧା ସିଧା ସେଠାରେ ମୁଁ ତହସିଲଦାରଙ୍କୁ ଦୁବୁକଥା କହିବ । ହଁ— ଶୁଣ ! ପ୍ରକୃତରେ ଯଦି ମଧୁ ମହାନ୍ତି ପାଲରୁ ଖସିବାକୁ ଚାହଁ ତା'ହେଲେ ତମମାନଙ୍କୁ ମେଳି କରିବାକୁ ହେବ ।

— ନିଶ୍ଚେ ବାବୁ ମେଳି କରିବୁ... ତୁମେ ଆମ ଆଡ଼େ କେବେ ମିତ କୁହ !

— ଠିକ୍ ଆଜିର ବାରି । ଆଜି ଶୁକ୍ରବାର—ଆସନ୍ତା ଶୁକ୍ରବାର ଦିନ ଦି'ଟା ବେଳେ ପହଞ୍ଚିବି । ସବୁ ଲୋକଙ୍କୁ ରୁଣ୍ଡ କରିଥିବ— ସେଇଠି ସବୁ କଥା ପଡ଼ିବ ।

ମାନୁବାବୁଙ୍କ ଠାରୁ ଆଶ୍ୱାସନାର ବାଣୀ ଶୁଣି ତିନିଜଣଯାକ ଆଦିବାସୀଙ୍କ ମୁହଁରେ ହସର ଲହଡ଼ି ଖେଳିଗଲା । ସମସ୍ତେ ଜବାବ ଦେଇ ଜୁହାର ହେଲାବେଳେ ମାନୁବାବୁ କହିଲେ— ନା-ନା ଏମିତି ଜୁହାର ହେବନି । ଏ ଜୁହାରର ଅର୍ଥ ହେଉଛି— ବାବୁ ! ମୋତେ କ୍ଷମା କର । ଏଣିକି ଜୁହାର ନ ହୋଇ ହାତମୁଠା କରି ମୁଣ୍ଡ ପାଖକୁ ନେଇ କହିବ ଲାଲ ସଲାମ ! .....କମ୍ରେଡ୍, ଲାଲ ସଲାମ ! ଏ କଥାକୁ ବୁଝିବ ମୁଁ ଲଢ଼େଇ ପାଇଁ ତିଆର୍ ଅଛି ।

ମୁଁ ତୁମକୁ ଆଗେ ସଲାମ ଜଣାଉଛି ।

ମାନୁବାବୁ ହାତ ବଜ୍ରମୁଷ୍ଟି କରି କହିଲେ— କମ୍ରେଡ୍, ଲାଲ ସଲାମ । ତିନିଜଣଯାକ ଲା... ଲ... ସଲମ କହି ବିଦାୟ ନେଲେ ।

ସାମନ୍ତବାଦୀ ଯୁଗର ଶେଷ ଅଧ୍ୟାୟରେ ମଧୁ ମହାନ୍ତିର ଜନ୍ମ । ମହାବୀର ପ୍ରତାପଚନ୍ଦ୍ର ରୁଦ୍ର ନାରାୟଣ ଦେବ ସେତେବେଳେ ରାଜତ୍ୱ କରୁଥାଆନ୍ତି । ରୁଦ୍ରନାରାୟଣ ଆପଣାକୁ ମହାବୀର, ମହାଯୋଦ୍ଧା, ମହାଜ୍ଞାନୀ, ମହାପୁରୁଷ, ମହାରାଜା ବୋଲାଇ ଚାଟୁକାର ଭାଟ-ଚାରଣମାନଙ୍କ ଦ୍ୱାରା ସ୍ୱୟଂ ବ୍ରହ୍ମାଙ୍କ ଅବତାର ବୋଲି ଘୋଷଣା କରିଥାଏ । ଯେତେସବୁ ଭଲକାମ ମହାରାଜା କରିଛନ୍ତି— ସେତେସବୁ ପଦାର୍ଥ ମହାରାଜା ଉପଭୋଗ କରିବେ— ଯେତେ ସବୁ ସୁନ୍ଦରୀ ନାରୀ ମହାରାଜାଙ୍କ ଶଯ୍ୟାସଙ୍ଗିନୀ ହେବେ— ଏଇ ଥିଲା ସାମନ୍ତବାଦ ଯୁଗର କୁଟୀଳ କଠୋରତା । ପ୍ରଚଣ୍ଡ ଭଣ୍ଡାମୀ, ଅସତ୍ୟ, ଅନ୍ୟାୟ, ଅତ୍ୟାଚାର, ଶୋଷଣରେ ରାଜ୍ୟ ଶାସନ ଚାଲିଥିଲା ।

ଏ ସବୁ ଜଘନ୍ୟ କାର୍ଯ୍ୟ ଯେ ମହାରାଜା ଏକା ଏକା କରନ୍ତି ତା' ନୁହେଁ— ନିମକ ହାରାମଦଳ ପାଖେ ପାଖେ ଥାଆନ୍ତି— ସେମାନେ

ମହାରାଜାଙ୍କୁ ସମସ୍ତ ପ୍ରକାର ଅତ୍ୟାଚାର କରିବାରେ ସାହାଯ୍ୟ କରନ୍ତି । ରାଜାମାନେ ସ୍ୱୟଂ ବ୍ରହ୍ମାଙ୍କ ପୁତ୍ର । ଏଇକଥା ଲୋକମନରେ ଥରେ ଆସିଗଲେ ଆଉ କୌଣସି ଅସୁବିଧା ନାହିଁ । ରାଜା ଯାହା ଚାହିଁବେ ତାହା କରିପାରିବେ । ରାଜଭକ୍ତ-ନିରୀହ ପ୍ରଜାଗଣ ସବୁ ଦୁଃଖକଷ୍ଟ ଯାତନା, କଷଣ ଅକାରଣ ବାଧ ହୋଇ ସହ୍ୟ କରି ନିଅନ୍ତି ।

ରାଜା ମହାରାଜାମାନେ ପାପୀ— କିନ୍ତୁ ତାଙ୍କ ପାପରେ ଯେଉଁମାନେ ଜାଣିଶୁଣି ଭାଗୀଦାର ସେମାନେ ଜଣେ ଜଣେ ମହାପାପୀ । ସେହି ମହାପାପୀଙ୍କ ମଧ୍ୟରେ ମଧୁ ମହାନ୍ତି ଅନ୍ୟତମ ।

ରୁଦ୍ରନାରାୟଣ ଦେବଙ୍କ ଶାସନ ଭୁଶୁଡ଼ି ଆସୁଥିବା ବେଳେ ଆପଣାର ସ୍ୱାର୍ଥରେ ମଧୁ ମହାନ୍ତି ରାଜ୍ୟ ନିଶ୍ଚିହ୍ନ ହେବା ପାଇଁ ଇନ୍ଧନ ଯୋଗାଇ ଦେଇଥିଲା । ରାଜାର ଅତ୍ୟାଚାରରେ ଯେ ମଧୁ ମହାନ୍ତି ଏକା ସାହାଯ୍ୟ କରିଥିଲା ତା ନୁହେଁ, ମଧୁ ମହାନ୍ତି ଭଳି ବହୁ କଦର୍ଯ୍ୟ, ବଦମାସ୍, ଖଳ ପ୍ରକୃତିର ଲୋକେ ମଧ ସାହାଯ୍ୟ କରୁଥିଲେ । ରାଜାଙ୍କୁ ଠାକୁର ବୋଲି ପ୍ରମାଣ କରିବା ପାଇଁ କେତେଗୁଡ଼ିଏ ଲୋକ ବାହାରିଲେ, ରାଜା ସେମାନଙ୍କୁ ସ୍ୱତନ୍ତ୍ର ଜାତିର ଆଖ୍ୟା ଦେଲେ ।

ଆଜି ଯେ ନାନା ଜାତିର ଲୋକ ଆପଣାର ବଡ଼ିମା ଦେଖାଉଛନ୍ତି— ଏମାନଙ୍କୁ ନାମକରଣ ଦେଇଥିଲେ ସେଇ ରାଜାମହାରାଜାମାନେ । ରାଜାଙ୍କ ସ୍ୱାର୍ଥ ପାଇଁ ଯିଏ ଯେଉଁ କାମରେ ନିଯୁକ୍ତ ହେଲା— ସେ ସେଇଭଳି ନାମକରଣରେ ନାମିତ ହେଲା । ଜାତି ଗୋଟାଏ—ମଣିଷ ଜାତି । ତା' ଭିତରେ ପୁଣି ନାରୀପୁରୁଷ ଅଛନ୍ତି । ବର୍ତ୍ତମାନ ବୈଜ୍ଞାନିକ ଯୁଗ— ଆଧୁନିକ ଯୁଗରେ ମଣିଷ ସମାଜକୁ ଦୁଇଟା ଜାତି— ଦୁଇଟା ଗୋଷ୍ଠୀରେ ବିଭକ୍ତ କରି ଦିଆଯାଉଛି । ଲୁଟିଖିଆ-ଖଟିଖିଆ ଜାତି । ସମଗ୍ର ମଣିଷ ଜାତିକୁ ସେଇ ସାମନ୍ତବାଦୀ ଯୁଗରୁ ବିଭିନ୍ନ ଜାତିରେ ବିଭକ୍ତ କରାଯାଇଛି । ଏବେ ମଧ ସେ କୁସଂସ୍କାର ଗୁଡ଼ିକ ଲୋକଙ୍କ ମନରେ ଜମାଟ ବାନ୍ଧି ରହିଛି । ପରିବର୍ତ୍ତନର ଧକ୍କାରେ ତାହା ଧୀରେ ଧୀରେ ଭାଙ୍ଗିବାକୁ ଆରମ୍ଭ କରିଛି ।

ଆଜି ଅବଶ୍ୟ ରାଜା ମହାରାଜା ସାମନ୍ତ ପ୍ରଭୁ ନାହାନ୍ତି, କିନ୍ତୁ ତାଙ୍କର ଖରାପ ଅଭ୍ୟାସ ଗୁଡ଼ିକ କିଛି ଲୋକଙ୍କ ମନରେ ଏବେ ମଧ ବସା ବାନ୍ଧି ରହିଛି । ସେଇ ଖରାପ ଅଭ୍ୟାସର ଚଳନ୍ତି ପ୍ରତିମା ହେଉଛି ମଧୁ ମହାନ୍ତି ।

ରାଜାମାନେ ପରଧନ ଅପହରଣ କରି ଲୋକମାନଙ୍କୁ ବେଠି ବେଗାରୀ ଖଟାଇ ମଉଜ ମଜ୍‌ଲିସ୍‌ରେ ଦିନ କାଟୁଥିଲେ । ପର ଝିଅବୋହୂଙ୍କ ଇଜ୍ଜତ ହରଣ କରିବା ରାଜାମାନଙ୍କର ଅଭ୍ୟାସରେ ପରିଣତ ହୋଇଯାଇଥିଲା । କାହା ଘରେ ସୁନ୍ଦରୀ ଝିଅ ବୋହୂ ଅଛନ୍ତି— ସେ ଖବର ଯୋଗାଇବା ଥିଲା ମଧୁ ମହାନ୍ତିର କାମ । ଏଥିପାଇଁ ମଧୁ ମହାନ୍ତିକୁ ବହୁ ପାରିତୋଷିକ ମିଳୁଥିଲା । ଇଜ୍ଜତ ହରାଇବା ପରେ ବାଧ ହୋଇ ସେତେବେଳର ବହୁ ସୁନ୍ଦରୀ ଯୁବତୀ ଆତ୍ମହତ୍ୟା କରିଥିବାର ଜଣାଯାଏ । ଯେଉଁମାନଙ୍କର ଜୀବନ ପ୍ରତି ମୋହମାୟା ରହୁଥିଲା, ସେମାନେ ରାଜାଙ୍କ ଉପଭୋଗ୍ୟ ବସ୍ତୁ ହୋଇ ରକ୍ଷିତା ଭାବେ କାଳଯାପନ କରୁଥିଲେ ।

ମହାପାପୀ ମଧୁ ମହାନ୍ତିର ପ୍ରଥମ ସ୍ତ୍ରୀ ଥିଲା ଅତ୍ୟନ୍ତ ସୁନ୍ଦରୀ । ରାଜାଙ୍କ କାନରେ ଖବର କୌଣସିମତେ ପହଞ୍ଚିବାରୁ ସେ ସୁନ୍ଦରୀ ବଧୂଟି ଛାଡ଼ ବା ପାଆନ୍ତା କୁଆଡୁ ? ରାଜାଙ୍କ ଅତ୍ୟାଚାର ସହ୍ୟ କରି ନପାରି ଅଯୋଗ୍ୟ ସ୍ୱାମୀକୁ ଅଭିଶାପ ଦେଇ ବିଷ ଖାଇ ଆତ୍ମହତ୍ୟା କଲା ।

ମଧୁ ମହାନ୍ତିର ଦ୍ୱିତୀୟ ସ୍ତ୍ରୀ ରାଜାଙ୍କ କାମନା ତୁଷ୍ଟି ପାଇଁ ଯୋଗ୍ୟା ନଥିଲା । ମଧୁ ମହାନ୍ତିର ପନ୍ଦର ବର୍ଷ ସାଂସାରିକ ଜୀବନ ମଧ୍ୟରେ ପାଞ୍ଚଟି ପୁତ୍ରକନ୍ୟା ଜନ୍ମ ହେଲେ । ଠିକ୍ ସେତେବେଳକୁ ରାଜାରାଜୁଡ଼ା ଶାସନ ଓ ସାମନ୍ତବାଦୀ ପ୍ରଥାର ଶେଷ ଶିଖା ଲିଭି ଆସୁଥିଲା । ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ପ୍ରବଳ ଜନ ଆନ୍ଦୋଳନ ଗଢ଼ି ଉଠିଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବ୍ରିଟିଶ ଜାତି ସାମିଲ୍ ହୋଇଥିବାରୁ ଭାରତବର୍ଷକୁ ଅଧିକଦିନ ଶାସନ କରିବାର ଆଶା ମଉଳି ଯାଇଥିଲା । ଆପୋଷ ରଫା ନାମରେ ଦେଶ ସ୍ୱାଧୀନ ହେଲା । ବ୍ରିଟିଶ ସାମ୍ରାଜ୍ୟବାଦର ପତନ ଘଟିବା ସଙ୍ଗେ ସଙ୍ଗେ ସାମନ୍ତ ପ୍ରଭୁମାନଙ୍କର ଯାହାକିଛି କର୍ତ୍ତୃତ୍ୱ ଥିଲା, ତାହା ମଧ୍ୟ ଲୋପ ପାଇଲା ।

ମଧୁ ମହାନ୍ତିର ଗୋଡ଼ାଣିଆ ଚାକିରୀ ଖଣ୍ଡିକ ଯିବା ପରେ ମଦ ଗଞ୍ଜେଇରେ ସେ ଏତେ ଅଭ୍ୟସ୍ତ ହୋଇ ପଡିଥିଲା ଯେ— ଯାହା କିଛି ରାଜାଙ୍କ ଠାରୁ ଧନ ସମ୍ପତ୍ତି ଆଣି ରଖିଥିଲା— ତାହା ଧୀରେ ଧୀରେ ଶୂନ୍ୟ ହେବାକୁ ବସିଲା ।

ଶେଷରେ ମଧୁ ମହାନ୍ତିର ଆଖି ପଡ଼ିଲା ପାଟପୁର ଅଞ୍ଚଳରେ । ପାଟପୁର ଅଞ୍ଚଳର ଜନସାଧାରଣ ପ୍ରାୟ ଅଧିକାଂଶ ଆଦିବାସୀ ଶ୍ରେଣୀୟ । ଜଙ୍ଗଲର ଫଳମୂଳ, ପଶୁଶିକାର କରି ସେମାନେ ଚଳି ଆସୁଥିଲେ । ସ୍ୱାଧୀନତା ପୂର୍ବରୁ

ଜଙ୍ଗଲ ସଫା କରି କରି ଅନେକ ଜମି ଚାଷ ଜମି କରିଥିଲେ । ମାଟି ସହିତ ମାଟି ହୋଇ ସେମାନେ ଦୁଃଖ କଷ୍ଟରେ ଜୀବନଯାପନ କରୁଥିଲେ । ସାମନ୍ତ ପ୍ରଭୁମାନଙ୍କର ଦୃଷ୍ଟି ସେମାନଙ୍କ ଉପରେ ପଡିନଥିଲା । ସରକାରଙ୍କର ବିଷ ଦୃଷ୍ଟି ସେମାନଙ୍କ ଉପରେ ପଡିଲା । ବେଆଇନ୍ ଭାବେ ଜମି ଦଖଲ, ଜଙ୍ଗଲ ପଦାର୍ଥ ବ୍ୟବହାର କରିଥିବାରୁ ସେମାନଙ୍କ ଉପରେ ପୋଲିସ୍, ଜଙ୍ଗଲ ବିଭାଗ, ତହସିଲ କର୍ମଚାରୀମାନଙ୍କର ଆକ୍ରମଣ ଆରମ୍ଭ ହୋଇଗଲା । ଆଇନ୍ କାନୁନ୍‌ର ଧାର ଧାରନ୍ତି ନାହିଁ ସେମାନେ । ଚାଷ କରୁଥିଲା ବେଳେ ନାଲିପଗଡିଆ ଦେଖିଲେ ସେମାନେ ଭୟରେ ଥରହର ହେଉଥିଲେ । ଦଶବାର ଜଣ ଥାନାକୁ ଆସି ଯେଉଁଦିନ ଭୀଷଣ ମାଡ଼ ଖାଇଗଲେ— ସେହିଦିନ ଠାରୁ ତାଙ୍କ ଭିତରେ ଏକପ୍ରକାର ଅଜଣା ଭୟ ନାଲିପଗଡ଼ିଆମାନଙ୍କ ପ୍ରତି ଆସିଯାଇଥିଲା ।

ମଧୁ ମହାନ୍ତି ଏଇ ଭୟର ସୁଯୋଗ ନେଇ ଆଦିବାସୀମାନଙ୍କ ମନରେ ଆଶା ସଞ୍ଚାର କରିବାକୁ ଉଦ୍ୟମ କଲା । କୌଣସି ସରକାରୀ କର୍ମଚାରୀ ସେମାନଙ୍କୁ ଧମକାଇଲେ ମଧୁ ମହାନ୍ତି ସେଠାରେ ପହଞ୍ଚି ମଧ୍ୟସ୍ଥି କରୁଥିଲା । କର୍ମଚାରୀମାନଙ୍କୁ ଲାଞ୍ଚ ଦେଇ ବିଦା କରି ଦେଉଥିଲା । ଧୀରେ ଧୀରେ ଲୋକମାନଙ୍କର ଲାଞ୍ଚ ଦେବା ଅଭ୍ୟାସ ବଢ଼ିଲା । କର୍ମଚାରୀମାନେ ଲାଞ୍ଚୁଆ ହୋଇଗଲେ । ମଝିରେ ଦୁଇ ପଟରୁ ମଧୁ ମହାନ୍ତି ଫାଇଦା ଉଠାଇଲା ।

ପାଟପୁର ଅଞ୍ଚଳବାସୀଙ୍କର ଜମି ଆପଣା ନାଁରେ ସରକାରୀ ଖାତା ଖତିଆନରେ କିପରି ହେବ— ସେଥିପାଇଁ ସେମାନେ ବ୍ୟତିବ୍ୟସ୍ତ ହୋଇ ପଡିଲେ । ମଧୁ ମହାନ୍ତି ସରକାର ସାଙ୍ଗରେ ଲଢ଼ି ସେମାନଙ୍କୁ ଜମି ଦେଇଦେବ ବୋଲି ଆଶାର ବାଣୀ ଶୁଣାଇଲା । ସରଳ ନିରୀହ ପାଟପୁରବାସୀଗଣ ମଧୁ ମହାନ୍ତିକୁ ବିଶ୍ୱାସ କରିଗଲେ ।

ବିଶ୍ୱାସରେ ବିଷ ଦେଇ ମଧୁ ମହାନ୍ତି ସେମାନଙ୍କଠାରୁ ଅଜସ୍ରଟଙ୍କା ଲାଞ୍ଚ ନେବାରେ ଲାଗିଲା । ପାଟପୁରବାସୀଙ୍କର ଏକାନ୍ତ ଆତ୍ମୀୟର ପରିଚୟ ଦେବା ପାଇଁ ମଧୁ ମହାନ୍ତି ଜଣେ ଆଦିବାସୀ ରମଣୀକୁ ବିବାହ କଲା । ପାଟପୁର ଅଞ୍ଚଳରେ ଘର କରି ରହିଲା । ମଧୁ ମହାନ୍ତି କଥାରେ ପୋଲିସ୍, ଫରେଷ୍ଟ କର୍ମଚାରୀ, ତହସିଲ କର୍ମଚାରୀ, ଅଫିସରମାନେ ଅଛନ୍ତି ବୋଲି ସରଳ ବନବାସୀମାନଙ୍କର ଆସ୍ଥା ଆସିଥିଲା । ସେଥିପାଇଁ ସେମାନେ ମଧୁ ମହାନ୍ତି ଉପରେ ଭରସା କରିଥିଲେ— ତାକୁ ଅବିଶ୍ୱାସ କରୁନଥିଲେ । ଆଦିବାସୀ ରମଣୀଟି ଯେତେବେଳେ ଜାଣିପାରିଲା ମଧୁ ମହାନ୍ତିର ସ୍ତ୍ରୀ, ପୁତ୍ର, କନ୍ୟା

ଅଛନ୍ତି— କେବଳ ଉପଭୋଗ ପାଇଁ ତାକୁ ବିବାହ କରିଛି, ସେତେବେଳେ ସେ ତା'ର ଜଣେ ପ୍ରେମିକ ସହ କେଉଁଆଡ଼େ ଫେରାର୍ ହେଇଗଲା ଦିନେ ।

ମଧୁ ମହାନ୍ତି ପାଟପୁରବାସୀଙ୍କୁ ପରିଚୟ ଦେବାକୁ କାହାକୁ ଭାଇ, ମାମୁଁ, ପୁଅ, ନାତି କହି ଡାକୁଥିଲା । କେତେଜଣ ଆଦିବାସୀଙ୍କୁ ନିଶା ଖୁଆଇ ଗୋଟିଏ ଦଳ ବାନ୍ଧିଥିଲା । ଦଳର କାମ ଥିଲା ଟଙ୍କା ଆଦାୟ କରି ମଧୁ ମହାନ୍ତି ପାଖରେ ପଇଠ କରିବ ।

ଠିକ୍ ଦୁଇଦିନ ପରେ ଉଦୁଉଦିଆ ଖରାବେଳେ ମଧୁ ମହାନ୍ତି ପ୍ରାୟ ଶହେ ଜଣ ଆଦିବାସୀଙ୍କୁ ନେଇ ତହସିଲ ଅଫିସ୍‌ରେ ହାଜର ହେଲା ।

ମାନୁବାବୁ ସମସ୍ତଙ୍କ ଅଜଣାରେ ଘଟଣାକୁ ଲକ୍ଷ୍ୟ କରୁଥିଲେ । ସେହି ଚିରାଚରିତ ପ୍ରଥାରେ ତହସିଲ ଅଫିସ୍‌ରୁ ଜଣେ କିରାଣୀ ବାହାରକୁ ଆସି କହିଲା— ମଧୁବାବୁ ନମସ୍କାର ! ଚାଲନ୍ତୁ ଆମ୍ବଗଛ ମୂଳକୁ ଯିବା— ଏତେ ଲୋକ ଅଫିସ୍ ଭିତରେ ଜାଗା ହେବେନି ।

ଅଫିସ୍ ଠାରୁ ସାମାନ୍ୟ ଦୂର ଆମ୍ବଗଛ ମୂଳେ ସମସ୍ତେ ରୁଣ୍ଡ ହେଲେ । କିରାଣୀ କହିଲା— ଏଥରକ ଆପଣମାନଙ୍କର ଜମି ସବୁ ହେଇଯିବ । ଆଉ ଆପଣମାନଙ୍କୁ ଅଫିସକୁ ଦଉଡ଼ିବାକୁ ପଡିବନି । ଆମେ କେବଳ ସେଠାକୁ ଯିବୁ— ଜମି ମାପଚୁପ୍ କରିବୁ । ଆସନ୍ତା ରବିବାର ଦିନ ସବୁ ଜମି ମାପ ହେବ । ଆପଣମାନେ ସେଠାରେ ଥିବେ ।

ମଧୁ ମହାନ୍ତି କହିଲା— ଜାଣିଲ ଭାଇମାନେ ! ତହସିଲଦାର ବାବୁ ଯେତେବେଳେ ଜବାବ ଦେଉଛନ୍ତି— ତାଙ୍କ କଥା କ'ଣ ଅନ୍ୟଥା ହୋଇପାରେ ? ଆରେ— ହାକିମ କଲମଗାର ବାଜିଲେ ସବୁ ଠିକ୍ ହୋଇଯିବ ।

ମାନୁବାବୁଙ୍କ ସନ୍ଦେହ ମୋଚନ ହେଲା । ପାଞ୍ଚବର୍ଷ ଧରି ଗୋଟାଏ କିରାଣୀକୁ ମଧୁ ମହାନ୍ତି ନକଲି ତହସିଲଦାର ସଜାଇ ଲୋକଙ୍କୁ ଭୁଆଁ ବୁଲେଇ ଚାଲିଛି । ସଙ୍ଗେ ସଙ୍ଗେ ତହସିଲଦାରଙ୍କ ପାଖରେ ସମସ୍ତ ଘଟଣା କହିଲେ ।

ତହସିଲଦାର ଘଟଣା ସ୍ଥଳକୁ ଆସିଲେ । ଦେଖାଗଲା କିରାଣୀଟି ଧୀରେ ଧୀରେ ବ୍ୟସ୍ତ ହୋଇ ପଡିଲାଣି । ମଧୁ ମହାନ୍ତି ପାଟି ମଧ ଖନି ବାଜିବା ଆରମ୍ଭ କଲାଣି । ମାନୁବାବୁ କହିଲେ— ଦେଖନ୍ତୁ, ଆପଣଙ୍କର ଦ୍ୱିତୀୟ ରୂପ ନକଲି ତହସିଲଦାର । ଏଇ ସେଇ ଶାସକ ଦଳର ଦରଦୀ ନେତା ମଧୁ ମହାନ୍ତି—

ଷାଠିଏ ହଜାର ଟଙ୍କା ଠକି ଆଣିଛି। ଜମି ସମସ୍ତଙ୍କ ନାଁରେ କରାଇଦେବ।

ତହସିଲଦାର କହିଲେ— କିହୋ ମହାନ୍ତିଏ— ଘଟଣା କ'ଣ ସତ ?

ମଧୁ ମହାନ୍ତି ନବାବୀ ସ୍ୱରରେ କହିଲା— ନା ଆଜ୍ଞା, ଏସବୁ ମିଛ କଥା।

ଚୁପ୍ ! ମିଛ କଥା— ମାନୁବାବୁ ଗର୍ଜି ଉଠିଲେ।

ତହସିଲଦାର ଲୋକମାନଙ୍କୁ ପଚାରିଲେ— କ'ଣ ତମେ ସବୁ ଜମି ପାଇଁ ଟଙ୍କା ଦେଇଛ ?

ମଳିମୁଣ୍ଡିଆ ଲୋକଙ୍କ ମଧ୍ୟରୁ ବୟସ୍କ ବାସୁ ପିଙ୍ଗୁଆ କହିଲା— ବାବୁ ! ପାଞ୍ଚ ବର୍ଷ ହେଲା ଟଙ୍କା ଦେଇଦେଇ ନୟାନ୍ତ ହୋଇଗଲୁଣି। ଜଣକା ସାତ ଶହ, ଆଠ ଶହ, ହଜାରେ ଟଙ୍କା ପର୍ଯ୍ୟନ୍ତ ଦେଇଛୁ। ଦି' ତିନି ମାସରେ ଥରେ ଲେଖା ଏଇ ଅଫିସକୁ ଆସିଲେ— ଏଇ ନକଲି ତହସିଲଦାର୍ ବାବୁଟା ଆସି କହେ— ଜମି ଶୀଘ୍ର ତମକୁ ମିଳିବ। ମଧୁ ମହାନ୍ତି କହେ— ତହସିଲଦାରବାବୁ କହୁଛନ୍ତି ଯେତେବେଳେ ଜମି ନିଶ୍ଚୟ ହେବ।

ତହସିଲଦାର କିରାଣୀକୁ ଧମକେଇ ପଚାରିଲେ— କିହୋ, ଅଫିସକୁ ତମେ ବଦନାମ କରିଦେଲ !

କିରାଣୀଟି ମୁଣ୍ଡ ପୋତି ଠିଆହେଲା।

ମାନୁବାବୁ କହିଲେ— ଆପଣଙ୍କ ଅଫିସ ବଦନାମ ହୋଇଗଲା— ଏ ଲୋକମାନଙ୍କର ଯାଏ କେତେ ଆସେ କେତେ ? ଆଜି ଆପଣଙ୍କୁ ଜଣାଇ ଦେଇଗଲୁ—ଏ କିରାଣୀ ମହାଶୟ ଯେତେ ଟଙ୍କା ଲାଞ୍ଚ ନେଇଛନ୍ତି ଶୀଘ୍ର ଫେରାଇ ଦେଇ ଲୋକଙ୍କୁ ଜମି ପଟ୍ଟା ଦେଇଦିଅନ୍ତୁ। ମଧୁ ମହାନ୍ତି ଖବର ଆମେ ବୁଝିବୁ। ଆସ ଭାଇମାନେ— ଯାଙ୍କ ସହିତ ଆମର କୌଣସି କଥାବାର୍ତ୍ତା ନାହିଁ।

ମାନୁବାବୁଙ୍କ କଥାରେ କି ଚୁମ୍ବକ ଥିଲା କେଜାଣି ପାଞ୍ଚ ବର୍ଷର ଦରଦୀ ବନ୍ଧୁ ମଧୁ ମହାନ୍ତି, ନକଲି ତହସିଲଦାରର ବନ୍ଧନ ଛାଡ଼ି ସମସ୍ତେ ପଳେଇଗଲେ। ଠିଆ ହୋଇ ରହିଲେ ତହସିଲଦାର, କିରାଣୀ, ମଧୁ ମହାନ୍ତି।

ଘଟଣାଟି ପାଟପୁର ଅଞ୍ଚଳରେ ଆଲୋଚନା ହୋଇ ଏକ ଆଲୋଡ଼ନ ସୃଷ୍ଟି ହୋଇଯାଇଥିଲା । ଶୁକ୍ରବାର ସଭାକୁ ସବୁଘରୁ ଜଣେ ଦୁଇଜଣ କରି ଯୋଗଦେଲେ ।

ପାଟପୁର ଅଞ୍ଚଳର ଅଶୋକ ଝର । ପାହାଡ଼ ଭିତରୁ ଝରଣାର ଧାରଟା କୋଉକାଳରୁ ଫିଟିଛି ଯେ— ଆଉ ବନ୍ଦ ହେବାକୁ ନାହିଁ । ବିଭିନ୍ନ ପ୍ରକାର ଗଛରେ ପରିପୂର୍ଣ୍ଣ ସ୍ଥାନଟି । ପାହାଡ଼ ତଳେ ଏକ ଟାଙ୍ଗର ଜାଗାରେ ଗୋଟିଏ ଖଟିଆ ପଡିଛି । ଖଟିଆରେ ମାନୁବାବୁ ବସିଛନ୍ତି । ପ୍ରାୟ ହଜାରେ ଲୋକ ରୁଣ୍ଡ ହୋଇଗଲେଣି । ଦିନ ଚାରିଟା ହେବ ।

ମାଣିକ ମାଝୀ କହିଲା— ବାବୁ ! ଏଥର ଆରମ୍ଭ କରନ୍ତୁ । ଯିଏ ସବୁ ଆସିବାର କଥା ଆସିଗଲେଣି । ଆଉ ବେଶୀ ଲୋକ ଆସିବାର ନାହିଁ ।

— ଭାଇମାନେ ! ଆପଣମାନଙ୍କ ପାଖରେ ବର୍ତ୍ତମାନ ଗୋଟିଏ କଥା— ଆପଣମାନେ ମଣିଷ— କାହିଁକି ମଣିଷ ଭଳି ମଣିଷ ହୋଇ ପାରୁନାହାନ୍ତି— ଦିନ ରାତି ଯେତେ ଖଟିଲେ ବି ଦାନାକନା ମିଳୁନି— ଅଧାଖିଆ, ଅଧା ଲଙ୍ଗଳା ହୋଇ ଦୁଃଖ କଷ୍ଟରେ ଦିନ କାଟୁଛନ୍ତି— ଆପଣମାନଙ୍କ ଉପରେ ସବୁପ୍ରକାର

ଅନ୍ୟାୟ, ଅତ୍ୟାଚାର ଶୋଷଣ କଷଣ ନିର୍ଯ୍ୟାତନା କରାଯାଉଛି । କେଉଁଥି ପାଇଁ ଏସବୁ ହେଉଛି— କ'ଣ କଲେ ଏ ସବୁ ହେବନି—କ'ଣ କଲେ ମଣିଷ ସୁଖରେ ରହିପାରିବ— ଏ ପ୍ରଶ୍ନର ସଠିକ୍ ଉତ୍ତର ପାଇଗଲେ— ଯେଉଁ ମଧୁ ମହାନ୍ତି ଆପଣମାନଙ୍କ ସମ୍ମୁଖରେ ପାହାଡ଼ ଭଳି ଦେଖାଯାଉଛି— ସେଇ ମଧୁ ମହାନ୍ତି ଗଛର ପତର ଭଳି ଦେଖାଯିବ ।

ଦଶବାରଜଣ ବଡ଼ପାଟିରେ କହିଲେ—କୁହନ୍ତୁ କୁହନ୍ତୁ ବାବୁ ! ଆମେ ସବୁ କଥା ଶୁଣିବାକୁ ଚାହୁଁଛୁ ।

ମାନୁବାବୁ ଅତି ସରଳ ଭାଷାରେ ଆଲୋଚନା ଆରମ୍ଭ କଲେ । ମାଙ୍କଡ଼ଠାରୁ ମଣିଷର ବିବର୍ତ୍ତନ ପଥରେ ଶ୍ରମର ଭୂମିକା, ଆଦିମ ସାମ୍ୟବାଦୀ ସମାଜ, ଦାସ ସମାଜ, ସାମନ୍ତବାଦ ପୁଞ୍ଜିବାଦର ତାଣ୍ଡବଲୀଳା, ଖଟିଖିଆ, ଲୁଟିଖିଆଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ସଂପର୍କରେ ଚୁମ୍ବକେ ଚୁମ୍ବକେ ଆଲୋଚନା କରୁଥିବା ବେଳେ ଦୂରରୁ ଦେଖାଗଲା ମଧୁ ମହାନ୍ତି ସଭାସ୍ଥଳକୁ ଆସୁଛି ।

ଲୋକମାନେ ପଛକୁ ବେକ ଶଣ୍ଢ଼ା ବୁଲାଇ ଚାହୁଁଛନ୍ତି । ମଧୁ ମହାନ୍ତି ମୁହଁରେ କେହି ଜବାବ ଦିଅନ୍ତି ନାହିଁ । ସେଦିନ ତହସିଲ ଅଫିସରେ ମଧୁ ମହାନ୍ତି କଥାରୁ ବାହାରି ଆସି ମାନୁବାବୁ କଥାରେ ମାତିଯାଇଛନ୍ତି ପାଟପୁର ଅଞ୍ଚଳର ମେହନତୀ ଜନସାଧାରଣ । ଯେଉଁ ମଧୁ ମହାନ୍ତି କାହାରିକୁ ଖାତିର୍ କରେ ନାହିଁ— ସେ ଆଜି ସଭାସ୍ଥଳକୁ ଆସୁଛି । ପରୀକ୍ଷା ହୋଇଯିବ— ମାନୁବାବୁ ଆଉ ମଧୁ ମହାନ୍ତି ମୁହାଁମୁହିଁ ହେବେ ।

— ଭାଇମାନେ, ପଛକୁ ଚାହାଁଚାହିଁ କାହିଁକି କରୁଛନ୍ତି— ମଧୁ ମହାନ୍ତି ଆସୁଛି ତ— ଆସୁ– ଭୟ କାହିଁକି ?

ମଧୁ ମହାନ୍ତି ଆସି ସଭା ପଛରେ ଦୋଷୀଟି ଭଳି ଠିଆହେଲା । ମାନୁବାବୁ କହିଲେ— କିହୋ ମହାନ୍ତି— କୁଆଡ଼େ ଆସିଲ ?

ମଧୁ ମହାନ୍ତି ହାତ ଯୋଡ଼ି ନିଉନ ହୋଇ କହିଲା— ଆଜ୍ଞା ମୋର ଗୋଟିଏ ଆପତ୍ତି ଅଛି ।

ମାନୁବାବୁ ଗମ୍ଭୀର ସ୍ୱରରେ କହିଲେ— ସେଇଠି ବସ । ତମ କଥା ବର୍ତ୍ତମାନ ବିଚାର ହେବ ।

ମଧୁ ମହାନ୍ତି ଆଉ କିଛି ନ କହି ଠିଆ ହେଲା ।

— ବସ୍ ! କହୁଛି ।

ମଧୁ ମହାନ୍ତି ବାଧ ଶିଶୁଟି ଭଳି ବସି ପଡ଼ିଲା ।

ମାନୁବାବୁ ପୂର୍ବପରି ଅସମାପ୍ତ ଆଲୋଚନା ଆରମ୍ଭ କଲେ । ଲୋକେ ନୀରବରେ ଶୁଣୁଥାଆନ୍ତି । ମଧୁ ମହାନ୍ତି ମୁହଁ ସାମ୍ନାରେ ମାନୁବାବୁ ତା'ର ସମସ୍ତ ପାପ କର୍ମକୁ ବର୍ଣ୍ଣନା କରି କହିଲେ— ଏଭଳି ଅତ୍ୟାଚାରୀ ଲୋକଙ୍କୁ ମୃତ୍ୟୁଦଣ୍ଡ ଏକମାତ୍ର ପୁରସ୍କାର ।

ମଧୁ ମହାନ୍ତି ପଛରୁ ଆସି ମାନୁବାବୁଙ୍କ ପାଖରେ ପହଞ୍ଚି କହିଲା— ଆଜ୍ଞା—ମୋର ସବୁ ଦୋଷ । ମୁଁ ସବୁ ଭୁଲ କରିଛି— ମୋତେ ରକ୍ଷା କରନ୍ତୁ— କ୍ଷମା ଦିଅନ୍ତୁ । ସଙ୍ଗେ ସଙ୍ଗେ ଲୋକମାନଙ୍କୁ ଅନାଇ କହିଲା— ଭାଇମାନେ, ମୁଁ ଦୋଷୀ । ମୋତେ କ୍ଷମା ଦିଅନ୍ତୁ ।

ମାନୁବାବୁ କହିଲେ— ନା-ନା, ତୁମକୁ କ୍ଷମା ନାହିଁ । ତୁମ ପାପର ପ୍ରାୟଶ୍ଚିତ କରିବାକୁ ହେବ । ଜନତା ନ୍ୟାୟାଳୟରେ ତୁମର ବିଚାର ହେବ । ତୁମକୁ ଉପଯୁକ୍ତ ଶାସ୍ତି ଦିଆଯିବ ।

ଜଣେ ବୁଢ଼ା ଉଠି କହିଲା— କମ୍ରେଡ୍ ! ପାପୀଟା ଯେତେବେଳେ କ୍ଷମା ମାଗିଲାଣି, ଦିଅ— ତାକୁ ଛାଡ଼ି ଦିଅ ।

ଧନ୍ୟରେ ନିରୀହ ସରଳ ନିଷ୍କପଟ ଆଦିବାସୀ ମନ । ଯିଏ ପାଞ୍ଚବର୍ଷକାଳ ହନ୍ତସନ୍ତ କରି ମାରିଛି— ପଦେ କଥାରେ ତାକୁ କ୍ଷମା ଦେଉଛନ୍ତି ।

ମାନୁବାବୁ କହିଲେ— ଯେଉଁ ଟଙ୍କା ନେଇଛ— ସବୁ ଟଙ୍କା ଫେରସ୍ତ ଦେଇଦିଅ । ମଧୁ ମହାନ୍ତି ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଯାଇ କହିଲା— ଭାଇମାନେ ! ମୋତେ କ୍ଷମା କରନ୍ତୁ । ଟଙ୍କା ସବୁ ଖର୍ଚ୍ଚ କରି ଦେଇଛି— ଆଉ କୋଉଠୁ ଆଣି ଦେବି ? ଶପଥ କରୁଛି— ଆଉ କେବେ ଏ ଅନ୍ୟାୟ କାମ କରିବି ନାହିଁ । ତମମାନଙ୍କ ସହିତ ଭାଇଭଳିଆ ହୋଇ ଚଳିବି ।

ଦି' ତିନିଜଣ ଏକା ସଙ୍ଗରେ ଠିଆ ହୋଇ କହିଲେ— ଦିଅ ବାବୁ— ଭୁଲ ମାଗିଲାଣି ଯେତେବେଳେ ତାକୁ କ୍ଷମା ଦିଅ । ଟଙ୍କାକୁ ସବୁ ହଜମ

କରିସାରିଲାଣି । ଆଉ କୋଉଠୁ ଦେବ ?

ମାନୁବାବୁ କହିଲେ— ଏ ଠିକ୍ କଥା ନୁହେଁ । ଦୋଷୀକୁ ଏଭଳି ଭାବେ କ୍ଷମା ଦେଲେ ସେ ପୁଣି ଦୋଷ କରିବ । ଆପଣମାନଙ୍କ ଟଙ୍କାରେ ଯାହା ଜମିବାଡ଼ି ଘରଦ୍ୱାର କରିଛି— ସବୁ ତାକୁ ଛାଡି ଦେବାକୁ ହେବ । ଏଠାରେ ସେ ଆଉ ଦୋସରା ଘର କରି ରହିପାରିବ ନାହିଁ । ଜନ ଅଦାଲତରେ ମଧୁ ମହାନ୍ତିର ବିଚାର ହେବ ବୋଲି ଚାରିଆଡ଼େ ଡେଙ୍ଗୁରା ଦିଅ— ସବୁଲୋକ ଜମା ହୁଅନ୍ତୁ— ସେଠାରେ ବିଚାର ହେବ । ଜନତା ଚାହିଁଲେ ସେଠି ତାଙ୍କୁ କ୍ଷମା ଦିଆଯାଇପାରେ ।

ମଧୁ ମହାନ୍ତି କାକୁତି ମିନତି ହୋଇ ହାତଯୋଡ଼ି କହିଲା— ବାବୁ ! ଆପଣ ଯାହା ଦଣ୍ଡ ଦେବେ— ମୁଁ ମାନିନେବି । ଭାଇମାନେ ବି ଆପଣଙ୍କ କଥାରେ ରାଜି ହେବେ ।

ମାଣିକ ମାଝୀ କହିଲା— ଦେ–ବାବୁ ! ବିଚାର କରିଦେ । ଆମେ ତ ଏଠି ସମସ୍ତେ ଅଛୁ । ତୁଇ ଯାହା ଶାସ୍ତି ଦେବୁ— ଆମର ସେଥିରେ ଏକମତ ।

ସମସ୍ତେ ହୋ ହୋ ହୋଇ କହିଲେ— ହଁ, ବାବୁ ! ବିଚାର କରି ଦିଅ । ଆମେ ସମସ୍ତେ ରାଜି ହେବୁ ।

ମାନୁବାବୁ କହିଲେ— ବିଚାର ଆପଣମାନେ କରନ୍ତୁ । ଭୁଲ୍ ଠିକ୍ ମତ ମୁଁ ଦେଇପାରେ ।

ଶେଷରେ ଲୋକମାନେ ଆଲୋଚନା କରି ସ୍ଥିର କଲେ ଯେ, ମଧୁ ମହାନ୍ତି ସହିତ ସମସ୍ତ ପ୍ରକାର ବନ୍ଧନ ଛିନ୍ନ କରାଯିବ । ଲୋକଙ୍କ ଝାଳ ବୁହା ଟଙ୍କା ଆଉ ରକ୍ତଝରା ମେହନତର ମଦତରେ ସେ ଯେଉଁ ଘର ଜମି କରିଛି— ତାକୁ ଛଡ଼ାଇ ଆଣି ସେ ଘରେ ସ୍କୁଲଘର ଏବଂ ଜମିରେ କୋଠଚାଷ କରି ଗାଁର ଉନ୍ନତି ପାଇଁ ଖର୍ଚ୍ଚ କରାଯିବ ।

ମାନୁବାବୁ ପ୍ରସ୍ତାବଟି ଶୁଣି ମତ ଦେଲେ— ଏ ଅବଶ୍ୟ ଉତ୍ତମ ପ୍ରସ୍ତାବ । ମଧୁ ମହାନ୍ତିଙ୍କୁ ଯେଉଁ ଶାସ୍ତି ଦିଆଗଲା— ତାକୁ ଠିକ୍ ଠିକ୍ ଭାବେ କାର୍ଯ୍ୟକାରୀ କରିବାକୁ ହେବ । ତା'ର ଶାସ୍ତିରୁ ଜନସାଧାରଣ ଉଚିତ୍ ଶିକ୍ଷା ଗ୍ରହଣ କରିବା ହେଉଛି ବଡ଼କଥା ।

ସମସ୍ତେ ସଭାରେ ପ୍ରସ୍ତାବ କାର୍ଯ୍ୟକାରୀ କରିବେ ବୋଲି ଜବାବ ଦେଲେ । ସେତେବେଳକୁ ସନ୍ଧ୍ୟା ହୋଇଆସୁଥିଲା । ଜଙ୍ଗଲ ଭିତରେ ଦୂରରୁ ଆସିଥିବା ଲୋକମାନେ ଯିବେ । ସଭାକାର୍ଯ୍ୟ ଆଉ ଅଧିକ ସମୟ ନ ବଢ଼ାଇ ଇନ୍‌କିଲାବ ଜିନ୍ଦାବାଦ୍ ଧ୍ୱନି ଦେଇ ଶେଷ କରାଗଲା ।

ସନ୍ଧ୍ୟାରେ ଝାପସା ଅନ୍ଧାର ଧୀରେ ଧୀରେ କଟିକଟି ଯାଉଥିବା ବେଳେ ଚନ୍ଦ୍ର ଆକାଶରେ ଦେଖାଦେଉଥିଲେ । ଜଙ୍ଗଲି 'ରାସ୍ତା ଉପରେ ଗଛର ଘନବିନ୍ୟାସ ଫାଙ୍କ ଦେଇ ଚନ୍ଦ୍ର କିରଣ ଛାଇ ଛାଇକା ହୋଇ ପଡୁଥାଏ । ସେଇ ଚନ୍ଦ୍ରାଲୋକର ଚଟୁଳ ସ୍ପର୍ଶ ସତେ କି ଚମତ୍କାର !

ଦେଖହୋ— ଏଗୁଡ଼ାଙ୍କର ଏଡେ ବହପ ! ମୁହଁରେ ଜବାବ ଦେଲେଣି । ଡାଲିକି ଦେଲେ ଥରୁଥିଲେ— ମୁହଁରୁ କଥା ପଦେ ବାହାରୁ ନଥିଲା । ଯାହା ଯେତେବେଳେ ଇଚ୍ଛା-ଅର୍ଡ଼ର ଦେଲେ ଘରେ ପହଞ୍ଚାଇ ଦେଉଥିଲେ । ଆଜି କାଲି ମୁହଁ ମୋଡ଼ି ଦେଇ ଚାଲିଯାଉଛନ୍ତି ।

ଏପରିବର୍ତ୍ତନ ସେମାନଙ୍କର ଘଟିଲା କେମିତି ?

ସବୁ ସେଇ ଟୋକାର ନାଟ !

ତା ନାଟଫାଟକୁ ବନ୍ଦ କରିଦେବାକୁ ହେବ ।

ମଧୁ ମହାନ୍ତିର ଏଇ କେତେ ପଦ କଥା ଶୁଣି ଠିକାଦାର ବାବୁ କହିଲା— ସେ ବଦମାସ ଟୋକାକୁ ଏଠୁ ହଟାଇବାକୁ ହେବ । ମୋର ଯାହା କ୍ଷତି ହେବ— ହେବ— ଆମମାନଙ୍କର ଏ ମଉଜ ମଜ୍‌ଲିସ୍ ଛାଡ଼ିଯିବ । ପୁଲିସ ଅଫିସର ଧୀର କଣ୍ଠରେ କହିଲେ— ମାନସ ଦାସକୁ ଏତେ ସହଜରେ କାବୁ କରି ହେବନି । ଏଥିପାଇଁ କୌଶଳ ଖଞ୍ଜିବାକୁ ହେବ ।

ମଧୁ ମହାନ୍ତି ଠିକାଦାର ଏକସଙ୍ଗରେ 'ଠିକ୍ କହିଲେ' ବୋଲି କହିଉଠିଲେ ।

ସମସ୍ତେ ମଦଗ୍ଲାସରେ ମୁହଁ ଲଗାଇଲେ । ଦେଶୀ କୁକୁଡ଼ାରେ ପ୍ରସ୍ତୁତ ହୋଇଥିବା 'ଚିଲି ଚିକିନ୍'ରୁ ମଝିରେ ମଝିରେ 'ଚାଖଣ' ଭାବେ ଖଣ୍ଡେ ଖଣ୍ଡେ ପାଟିରେ ପକାଉ ଥାଆନ୍ତି ।

ଏହି ଦୁଷ୍ଟଚକ୍ର ତ୍ରିମୂର୍ତ୍ତି ମାନସ ଦାସ ବିରୋଧରେ ଷଡଯନ୍ତ୍ର ପାଇଁ ମନ୍ତ୍ରଣା ଆରମ୍ଭ କଲେ ।

ମହାନ୍ତି କହିଲେ— ମାନସ ଦାସ ଯେଉଁଭଳି ଭାବେ ଅଦିବାସୀ, ଗରିବ ଲୋକ ଯେଉଁଗୁଡ଼ା ଆମର ପ୍ରଜା ଥିଲେ—ସେମାନଙ୍କ କାନରେ କି ମନ୍ତ୍ର ଫୁଙ୍କିଲା କେଜାଣି- ଖାଲି ପିଇଯାଉଛନ୍ତି— ଚାଲାଖ ଚତୁର ହୋଇ ଗଲେଣି । ଭୋଟରେ ମଧ୍ୟ ବାଧା ପଡିବ । ଦେଶ ସ୍ୱାଧୀନ ହେବା ପର ଠାରୁ ସବୁବେଳେ ଆମ ଦଳ ଜିତି ଆସୁଛି— ଏ ଗରିବ ଗୁରୁବାଗୁଡ଼ା ଚାଲାଖ ହୋଇଗଲେ ଆମେ ସବୁବେଳେ ହାରିଯିବା ।

— ଖାଲି ହାରିଯିବାନି— ମରିଯିବା— ଠିକାଦାର ବାବୁ କଥାରେ ତାଳ ଦେଇ କହିଲେ ।

ପୁଲିସ୍ ଅଫିସର କହିଲେ— ଜଙ୍ଗଲି ଲୋକଗୁଡ଼ା ଥରେ ପୁଲିସ୍— ଥାନା- ନାଁ ଶୁଣିଲେ ଥରୁଥିଲେ । ଆମେ ଯାହା ଚାହୁଁଥିଲୁ— କରି ପାରୁଥିଲୁ । ତୁମେମାନେ ଯାହା ଅପରାଧ କରୁଥିଲ ସବୁ ଘୋଡ଼ାଇ ପକାଉଥିଲି । ଏ ଯେଉଁ ନେତାଟା ଆସିଛି— ଲୋକଙ୍କୁ ବୁଦ୍ଧି ଦେଇ ଲଢ଼େଇ ଶିଖାଉଛି— ଆମର ସବୁ ବୁଦ୍ଧି ଫସର ଫାଟି ଯିବ । ଯାକୁ ଜବତ କରିବାକୁ କିଛି ଗୋଟାଏ ବାଟ କରିବାକୁ ହେବ ।

ମଧୁ ମହାନ୍ତି ଚିନ୍ତିତ ମନରେ କହିଲା— ଯାହା ଏ ଆଖି ଦେଖି ନଥିଲା—ଆଜି ଦେଖିଲା କ୍ଷଣି ମୋ ରକ୍ତ ସବୁ ଟକ୍‌ମକ୍ ହୋଇ ଫୁଟୁଛି । ଏ ଟୋକାଟା ଅଞ୍ଚଳକୁ ନ ଆସିବା ପୂର୍ବରୁ ଆଖପାଖ ଗାଁ ଗଣ୍ଡାର ଲୋକମାନେ ବଡ ଗଡ଼କୁ ଆସିଲେ ନିଶ ସଫା କରି ଆସୁଥିଲେ । ଯୋତା ମାଡ଼ିବା ତାଙ୍କ ଜାତକରେ ନଥିଲା । କଦବା କିଏ ଯଦି ଖରାଦିନେ ଯୋତା ପିନ୍ଧି ଆସୁଥିଲା — ଗଡ଼ ଛୁଇଁଲା ଛଇଁଲା କ୍ଷଣି ଜୋତାକୁ ହାତରେ ଧରି ଆସୁଥିଲା । ସଫା ଜାମାପଟା ପିନ୍ଧୁନଥିଲେ । ସବୁବେଳେ ମୁଣ୍ଡ ତଳକୁ କରି ଚାଲୁଥିଲେ । ଆମ ଭାଇ ବିରାଦରଙ୍କୁ ଦେଖିଲେ ମୁଣ୍ଡିଆ ମାରୁଥିଲେ । ବର୍ତ୍ତମାନ ସବୁ ଓଲଟା ହୋଇଗଲା । ସବୁ ସେଇ ଟୋକାର କାଣ୍ଡ ।

ତ୍ରିମୂର୍ତ୍ତିଙ୍କର ମନ୍ତ୍ରଣା ଚାଲିଲା । ଶେଷ ସିଦ୍ଧାନ୍ତରେ ପହଞ୍ଚିଲେ — ମାନସ ଦାସକୁ ସେମାନେ ସିଧା ମୁକାବିଲା କରିବେନି । ସେଇ ଆଦିବାସୀ— ଗରିବ— ଅଭାବୀ ଲୋକଙ୍କ ଭିତରେ କିଛି ଦଲାଲ ବାହାର କରିବାକୁ ହେବ । ଯାହା ଖର୍ଚ୍ଚ ହେବ— ଠିକାଦାରବାବୁ ସବୁ ବହନ କରିବେ ।

ମଧୁବାବୁ ସରକାର ଓ ଦଳର ସାହାଯ୍ୟ ନେବେ । ପୁଲିସ୍ ଅଫିସର ମାନସ୍-ଦମନ କାର୍ଯ୍ୟରେ ପୁରାପୁରି ସହଯୋଗ କରିବେ । ମାନସ ଦାସଙ୍କୁ ଶେଷ କରି ଦେଲା ପରେ ହିଁ ଯେତେ ପ୍ରକାର ଜଘନ୍ୟ କାର୍ଯ୍ୟ କରିବାକୁ ପଡିବ । ସେସବୁ ଯେତେ କଷ୍ଟ ହେଉ-କରିବାକୁ ହେବ ।

ଏହି ସିଦ୍ଧାନ୍ତରେ ପହଞ୍ଚିଲା ବେଳକୁ ତ୍ରିମୂର୍ତ୍ତି ପ୍ରଚୁର ମଦ୍ୟପାନ କରି ହୋସ ହରାଇବାକୁ ବସିଲେଣି ।

— କାଇରା ! ବୀର ସିଂ !! ତୁମେ ଦି' ଜଣଯାକ ଯଦି ମୋ କଥା ମାନିବ-ତୁମର ଭାଗ୍ୟ ପୁରା ପରିବର୍ତ୍ତନ ହୋଇଯିବ । ତୁମେ ଦିନ କେଇଟାରେ ବଡ଼ ଲୋକ ହୋଇଯିବ । ବହୁତ ଟଙ୍କା ରୋଜଗାର କରିବ । ତୁମକୁ ଶହଶହ ଲୋକ ସ୍ୟାଲୁଟ୍ ମାରିବେ ।

ମଧୁ ମହାନ୍ତିର ଲୋଭଣିଆ କଥା ଶୁଣି କାଇରା ମୁଣ୍ଡାର ଆଖି ଦିଇଟା ଚଞ୍ଚଳ ହୋଇ ଉଠିଲା । ସେ ପଚାରିଲା— ସାଆନ୍ତେ— କ'ଣ କରିବାକୁ ହେବ କୁହନ୍ତୁ ।

— ତୁମର ସେ ଯେଉଁ ମାନୁବାବୁ ! ତା' କଥାରୁ ପୁରା ବାହାରି ଆସି ଆମ ଦଳରେ ମିଶିବ । ଆମ ଦଳରୁ ଏଥର ତୁମକୁ ସରପଞ୍ଚ ପ୍ରାର୍ଥୀ କରିବୁ ।

ସରପଞ୍ଚ ହେବା ପାଇଁ ଯାହା ଚାଉଳମଦ ଟଙ୍କା ଦରକାର ପଡିବ— ସବୁ ଆମେ ଯୋଗାଇଦେବୁ। ତୁମକୁ କେହି ଭୋଟ ନଦେଲେ ବି ଆମେ ଭୋଟ ଦିଆ କରେଇଦେବୁ। ପୁଲିସ୍, ଆମ ହାତରେ। ଭୋଟ କରେଇଲା ବାଲା ଆମ ବୋଲ ମାନିବେ। ତୁମେ ସରପଞ୍ଚରେ ନିର୍ବାଚିତ ହେଲା ପରେ ତୁମ ବେକରେ ଫୁଲମାଳ ପଡ଼ି ଭାରି ବଢ଼ିଆ ଦେଖା ଯିବ। ତୁମେ ଖଦଡ ପଞ୍ଜାବୀ ଲୁଗା ପିନ୍ଧିବ। ପୁରା ନେତା ବନି ଯିବ। ତା' ପରେ.....

ତା'ପରେ..... ତା'ପରେ ଆଜ୍ଞା କ'ଣ ହେବ ! କାଇରା ଉତ୍କଣ୍ଠାର ସହ ପଚାରିଲା।

ମଧୁ ମହାନ୍ତି କହିଲା— ତା' ପରେ ତୁମ ଦସ୍ତଖତରେ ସବୁ କାମ ହେବ। ଯେତେ ଠିକାଦାରୀ, ଯେତେ କଣ୍ଟ୍ରୋଲ ଜିନିଷ, ଚାଉଳ ଚିନି କିରାସିନି ସବୁ ତୁମେ ବାଣ୍ଟିବ। ଠିକାଦାରୀରୁ କମିଶନ୍ ନେବ—ଚାଉଳ ଚିନି କିରାସିନି ଡିଲରସିପ୍‌ରୁ କମିଶନ ନେବ। କମିଶନ ଟଙ୍କାରେ ତୁମ କୁଡ଼ିଆ ଘର କୋଠା ପାଲଟି ଯିବ। ତୁମେ ସମସ୍ତଙ୍କ ଜମି କିଣିନେବ। ତୁମକୁ ଆମରି ଭଳି ଲୋକ ସବୁ ବି ସାଆନ୍ତ ବୋଲିବେ।

ଏ କ'ଣ ସତରେ ହେବ ଆଜ୍ଞା ! ବୀର ସିଂ ପଚାରିଲା।

— ହେଇ କରି ଅଛିନା— ହେବ କ'ଣ ?

କାଇରା କହିଲା— ଏଥିରେ ରାଜି ଆଜ୍ଞା ! ହେଲେ..... ମାନୁବାବୁଟାକୁ ସବୁ ଗାଁ ଗଣ୍ଡାର ଲୋକ ଭଲ ପାଉଛନ୍ତି। ଆମେ ତାକୁ ମାନୁଛୁ। ତାକୁ ବିରୋଧ କଲେ ଗାଁ ଲୋକେ ଆମକୁ ବାଡ଼େଇ ପକାଇବେ।

ମଧୁ ମହାନ୍ତି କହିଲେ— ଶୁଣ ! ତୁମେ ସବୁ ବୋକାଙ୍କ ଭଳି କଥା କହୁଛ— ତାକୁ ବିରୋଧ କରିବା ଦରକାର ନାହିଁ। କହୁଛି— ଶୁଣ ! ଆଗେ ଟିକେ ଟିକେ ଏହି ବିଦେଶୀ ମାଲରୁ ପକାଇ ପାଟି ଓଦା କର।

ଏତକ କଥା କହିବା ଭିତରେ ମହାନ୍ତିଏ ବୋତଲରୁ ଦି' ଗ୍ଲାସ ଢ଼ାଳି ବୀର ସିଂକୁ ଧରାଇ ଦେଲେ। ଦୁହେଁ— ଢ଼କ ଢ଼କ କରି ପିଇଦେଲେ।

ମହାନ୍ତି କହିବା ଆରମ୍ଭ କଲେ— "ମୂଲ୍ଲ ମାଇଲେ ଯିବ ସରି ଦେବଙ୍କ ସଙ୍ଗେ କିମ୍ବା କଳି।" ମାନସ ଦାସକୁ ଏମିତି ବଦନାମ କରିଦେବ— ସେ

ଆଉ ମୁହଁ ଦେଖାଇ ପାରିବ ନାହିଁ— ଏରିଆ ଛାଡ଼ି ପଳାଇଯିବ ।

ବୀର ସିଂ କହିଲା— ବିନା ମେଘରେ ବଜ୍ରପାତ ଭଳି କଥା କହୁଛନ୍ତି ଆଜ୍ଞା ! ମାନୁବାବୁଙ୍କୁ ବଦନାମ କରିବା କ'ଣ ଏଡ଼େ ସହଜ ପାଠ ହୋଇଛି ? ସେ ସୁନା । ତାକୁ ଯୋଉଠି ନେଇ ଥୋଇଲେ ସେ ଚକଚକ ଦିଶିବ ।

ମହାନ୍ତିଏ କହିଲେ— ତୁମେ ସବୁ ବୋକା ଗୁଡ଼ା ! ସୁନାକୁ ସମସ୍ତେ ପିତଳ କହି ବୁଲିଲେ ଲୋକେ ବିଶ୍ୱାସ କରିଯିବେ । ଗୋଟିଏ କାମ କରିବାକୁ ହେବ । ଶୁଣ ! ଗୋଟିଏ ଝିଅ ଠିକ୍ କରିବାକୁ ହେବ । ତାକୁ ଦି' ଚାରିଶହ ଟଙ୍କା ଧରାଇଦେବା— ହାଣ୍ଡିଆ ପୂରା ପିଇବାକୁ ଦେବା— ଶାଢ଼ୀ, ବ୍ଲାଉଜ, ସାୟା, ଚପଲ ଦେବା— ସେ ମାନସ୍ ଦାସକୁ ଜବରଦସ୍ତ କୁଣ୍ଢାଇ ହାଲ୍ଲା କରିବ— ଆମେ ଲୋକ୍ ସେଟ୍ କରି ରଖିଥିବା— ସମସ୍ତେ ଘୋ ଘା ହୋଇ ପହଞ୍ଚି ଏ ଦୃଶ୍ୟ ଦେଖିବେ । ପୁଲିସବାବୁ ପହଞ୍ଚିଯିବେ— ମାନସ ଦାସ ଗିରଫ ଅପବାଦର ନାଗରା ବାଜିବ, ସମସ୍ତେ ଛି ଛା କରି କହିବେ— ସେ ଆଉ ମୁହଁ ନ ଦେଖାଇ ଏରିଆ ଛାଡ଼ି ପଳାଇଯିବ ।

କାଇରା ଟିକେ ମୁହଁ ଶୁଖାଇ କହିଲା— ଏ କାମକୁ ଆମ ଜାତିର କୋଉ ଝିଅ ରାଜି ହେବେନି । କଥାଟା ଧରା ପଡ଼ିଗଲେ ଆମ ସମସ୍ତଙ୍କ ମୁଣ୍ଡରେ ଠେଙ୍ଗା ପାହାର ପଡିବ । ଏ ଯୋଜନାକୁ ବାତିଲ କରନ୍ତୁ ଆଜ୍ଞା ! ଆଉ କ'ଣ ବୁଦ୍ଧି ପାଞ୍ଚନ୍ତୁ ।

ମହାନ୍ତିଏ କହିଲେ— ହଉ ! ତୁମେ ଦି' ଜଣ ହଜାରେ ଟଙ୍କା ନିଅ— ଆଜି ଖର୍ଚ୍ଚ କରିଦେବ । କାଲିକି ଆସ— ପୁଣି ଟଙ୍କା ଦେବି । ନୂଆ ବୁଦ୍ଧି ପାଞ୍ଚିଥିବି— ତୁମେ ଦି' ଜଣ କରିବ କି ନାହିଁ— ଶପଥ କରିଯା— କାଇରା-ବୀର ସିଂ ଦୁହେଁ ଶପଥ କରି ଗଲେ ।

ପଞ୍ଚବଟୀ ଖାଦାନର ଶ୍ରମିକମାନେ ଆପଣା ଦୁଃଖର କାରଣ ସଂପର୍କରେ ବୁଦ୍ଧି ଶିଖିବାକୁ ମାନୁବାବୁଙ୍କୁ ଡକାଇ ପଠାଇଥିଲେ । ମାନୁବାବୁ ଖଣିଖାଦାନରେ ମେହନତ୍ କରୁଥିବା ଶ୍ରମିକମାନଙ୍କୁ କିଭଳି ଭାବେ ମାଲିକମାନେ ମଶା ଡାଆଁସ ପରି ଶୋଷଣ କରୁଛନ୍ତି— ସାରା ଦେଶରେ କିଭଳି ମାଲିକ ଶାସନ ଚାଲିଛି— ସେଥିରୁ କିଭଳି ମୁକ୍ତି ମିଳିବ— ଲଢ଼େଇ କୋଉ ନୀତି ଆଦର୍ଶରେ କାଇଦା କଟକଣାରେ ହେବ— ସବୁ କଥା ଟଙ୍କି ନିଖି କରି ତାଙ୍କ ଚାରିପଟେ ଘେରିଥିବା ଲୋକମାନଙ୍କୁ ବୁଝାଉଥିଲେ ।

ସଞ୍ଜ ମାଡ଼ି ଆସୁଥାଏ । ମାନୁବାବୁ କଥା ସାରି ଅନ୍ୟ ସ୍ଥାନକୁ ଯିବା ପାଇଁ କଥା ଦେଇଥିଲେ । ସେ ଯିବାକୁ ତରତର ହେଲେ । ଅନ୍ୟ ଦିନେ ପୁଣି ଆସିବାକୁ କଥା ଦେଲେ । ଝୁଲା ବ୍ୟାଗ୍‌ଟି କାନ୍ଧରେ ପକାଇ ସାଇକେଲ ଧରିଲା ବେଳକୁ ଆଖପାଖ ଗାଁରୁ ଖାଦାନ କୁଲିମାନେ ଆସୁଥିଲେ । ସେମାନେ ଖବର ପାଇ ଠିକ୍ ସମୟରେ ପହଞ୍ଚି ପାରିଲେ ନାହିଁ । ଦି' ଘଣ୍ଟା ବିଳମ୍ବରେ ପହଞ୍ଚି ମାନୁବାବୁଙ୍କୁ ଆଉ ଥରେ କହିବାକୁ କାକୁତି ମିନତି କଲେ ।

ମାନୁବାବୁ ଦି'ଘଣ୍ଟା କାଳ ଅନେକ—ଅନେକ ବିଷୟରେ ଆଲୋଚନା କରି ସାରିଥିଲେ । ଅନ୍ୟଦିନେ ମିଟିଂ ହେଲେ ପୁଣି ବୁଝାଇବେ ବୋଲି ପ୍ରତିଶ୍ରୁତି ଦେବାରୁ ବିଳମ୍ବରେ ଆସିଥିବା ଲୋକମାନଙ୍କ ମୁଖମଣ୍ଡଳରେ ଦୁଃଖର ଛାୟା ପରିଲକ୍ଷିତ ହେଲା ।

ମାନୁବାବୁ ସେମାନଙ୍କୁ ବୁଝାଇ କହିଲେ— ମୋତେ ସାତ କୋଶ ବାଟ ଯିବାକୁ ହେବ । ରାତି ଆଠ ଘଡିରେ ପହଞ୍ଚିବାକୁ କହି ଆସିଛି । ଜବାବ ରକ୍ଷା ନକଲେ ସବୁ ଅସୁବିଧା ହୋଇଯିବ । ଏଠାରେ ଯଦି ଦି'ଘଡ଼ି ରହିଯାଏ— ସେଠାକୁ ଦଶଖଣ୍ଡ ଗାଁରୁ ଆସିଥିବା ଚାଷୀ ଭାଇମାନେ ଫେରିଯିବେ । ତାଙ୍କ ମନ ଦୁଃଖ ହେବ । କାମ ମାରା ହେବ ।

ସମୟ ଜ୍ଞାନ— ଜବାବ ରକ୍ଷା କରିବା ଲୋକମାନେ ଶିଖି ନଥିଲେ । ମାନୁବାବୁ ସବୁ କଥା ବୁଝାଇ କହିଲେ ବି ସେମାନଙ୍କ ମନ ମାନୁନି ।

ଲୋକମାନଙ୍କ ମନୋଭାବକୁ ଲକ୍ଷ୍ୟ କରି ମାନୁବାବୁ କହିଲେ: ଭାଇମାନେ— ଆପଣମାନେ ଖଣି ଖାଦାନରେ କାମ କରନ୍ତି । ସେଠି ସକାଳ ୬ ଘଡିରେ କାମ ଧରିବାକୁ ହୁଏ । ବିଳମ୍ବ ହେଲେ ମାଲିକ ଫେରାଇଦିଏ । ସେଦିନର ମଜୁରୀ ମିଳେନା । ତୁମ ଛୁଆ ପିଲା ହଇରାଣ ହୁଅନ୍ତି । ଜୀବନ ଜୀବିକା ପାଇଁ ମାଲିକର ସମୟକୁ ଜଗିବା ପାଇଁ ପାହାନ୍ତିଆରୁ ଉଠି ଭୋର ଛଅଟାରେ ଖାଦାନରେ ହାଜିରା ପକାନ୍ତି । ତୁମରିମାନଙ୍କ ଦୁଃଖ ଯନ୍ତ୍ରଣା ଶୋଷଣରୁ ମୁକ୍ତି ମିଳିବା ପାଇଁ ମିଟିଂ ପାଇଁ ତୁମ ଭାଇମାନେ ଯେଉଁ ସମୟ ଦେଇଥିଲେ— ସେ ସମୟରେ ପହଞ୍ଚିଲ ନାହିଁ । ଭାବିଲ— ହଁ- ଦି'ଘଣ୍ଟା ବିଳମ୍ବରେ ଗଲେ ଚଳିବ ।

ନା— ଭାଇ— ଏମିତି ଆଉ ଦିନେ କରିବ ନାହିଁ । ଏପରି କଲେ ତୁମ ଦୁଃଖ ଘୁଞ୍ଚିବ ନାହିଁ । ହଉ ! ଆସିଛ ଯେତେବେଳେ ତୁମାମନଙ୍କ ପାଇଁ କିଛି ସମୟ ଦେଇଥାନ୍ତି— ହେଲେ ଅନ୍ଧାର ରାତିରେ ମୋତେ ଯିବାକୁ ହେବ । ଆଲୁଅ ନାହିଁ ।

ମାନୁବାବୁଙ୍କୁ ଘେରି କଥା ଶୁଣୁଥିବା ଲୋକଙ୍କ ଭିତରୁ ଜଣେ ମଳିମୁଣ୍ଡିଆ ବୁଢ଼ାଟିଏ କହିଲା— ବାବୁରେ-ଏଇ ତିନି ବେଟାରିଆ ଟର୍ଚ୍ଚଟା ନେଇ ଯା— ପଛରେ ନେଇ ଆସିବୁ । ଯାହା ତ ଭୁଲ ହେଲାଣି— ହେଲାଣି— ଆଉ କେବେ ଭୁଲ କରିବୁ ନାହିଁ । ତୋ ମୁହଁରୁ ପଦେ ଅଧେ ଶୁଣିକରି ଯିବୁ ।

ହଉ ! ଶୁଣ !

ମାନୁବାବୁ ସାଇକେଲକୁ ପାଖ ଗଛମୂଳେ ଆଉଜାଇ ଦେଇ କହିଲେ— ଆଜି ଗୋଟିଏ ତୁଣ୍ଡକଥା କହିବି । ଦରକାରରେ ଆସିବ । ଆସନ୍ତା ରବିବାର ଦିନ ବେଳସୁ ଆସିବି । ଦିନ ଦି'ଟାରେ ପୁଣି ଏଠାରେ ଆଖପାଖ ଖଣିଖାଦାନର ଲୋକେ ମେଳି ହେବେ— ସବୁକଥା ଗୋଟି ଗୋଟି କରି ବୁଝାଇ କହିବି ।

ଏବେ ଶୁଣ ! ଗୋଟିଏ ଛୋଟ ଘଟଣା ! ଲୋକମାନେ ଯିଏ ଯେଉଁଠି ଠିଆ ହୋଇଥିଲେ ବସିଗଲେ ।

ମାନୁବାବୁ କହିଲେ— ଗୋଟିଏ ଗାଆଁର ଜଣେ ମୁଖିଆ ଗାଁର ସବୁଲୋକଙ୍କୁ ଡାକି କହିଲେ— ଆମ ଗାଁରେ କ୍ଷୀର ସାଗର କରିବା । ସବୁ ଅଞ୍ଚଳର ମୁଖିଆମାନଙ୍କୁ ଡାକି ଦେଖାଇବା— ଲୋକେ ବାହାଃ ବାହାଃ କହିବେ ।

କ୍ଷୀର ସାଗର ଅର୍ଥ— ଗାଁରେ ଯେଉଁ ପୋଖରୀ ଖୋଳା ଯାଇଛି— ତାକୁ କ୍ଷୀରରେ ଭର୍ତ୍ତି କରିଦେବା— ନୀଳ ଜଳ ବଦଳରେ ଧଳା ଧଳା କ୍ଷୀରର ସାଗର ହୋଇଯିବ । ସମସ୍ତଙ୍କ ଘରେ ଗାଇ ଅଛି । ପ୍ରତି ଘରୁ ଯଦି ଦି' କିଲୋ ଲେଖାଁ କ୍ଷୀର ଆଣି ଢ଼ାଳିବ ତା'ହେଲେ ପୋଖରୀ ପୂର୍ଣ୍ଣ ହୋଇଯିବ । ସମସ୍ତେ ହଁ ଭରିଲେ— ଶପଥ କଲେ— ଏପରିକି ଗ୍ରାମଦେବତୀଙ୍କ ଝଣ୍ଡା ଛୁଇଁଲେ ।

ଦିନ ବାର ସମୟ ସ୍ଥିର ହୋଇଗଲା । ଭଦ୍ରଲୋକମାନଙ୍କୁ ନିମନ୍ତ୍ରଣ କରାଗଲା । ଚାରିଆଡ଼େ ଢେଙ୍ଗୁରା ଦିଆଗଲା । ଚାରିଆଡୁ ଲୋକେ କ୍ଷୀର ସାଗର ଦେଖିବାକୁ ଆସିବେ ବୋଲି ହାଲ୍ଲା ହୋଇଗଲା ।

ଯେଉଁ ଦିନ ବଡ଼ିଭୋରୁ ପୋଖରୀରେ କ୍ଷୀର ଢ଼ାଳିବେ— ରାତି ଚାରିଟାରୁ ଉଠି ଲୋକେ କ୍ଷୀର ପାତ୍ର ସଜିଲ କଲେ । ପ୍ରତ୍ୟେକ ପ୍ରତ୍ୟେକଙ୍କ ଘରେ ଚିନ୍ତା କଲେ— ସବୁଲୋକ କ୍ଷୀର ଢ଼ାଳିବେ— ସେ ଯଦି ପାଣି ନେଇ ଢ଼ାଳିଆସେ ତାହେଲେ କେହି ଦେଖିବେ ନାହିଁ— କ୍ଷୀର ବିକି ଅନ୍ୟ ଖର୍ଚ୍ଚ କରିବ । ଏହି ଚିନ୍ତା କେବଳ ସେ ଲୋକଟି କରିନାହିଁ । ପ୍ରାୟ ସବୁ ଘରେ ଏହି ଚିନ୍ତା କରି କେହି କାହାକୁ କିଛି କହୁନାହାଁନ୍ତି । ସମସ୍ତେ ନିଜ ନିଜକୁ ଭାରି ଚାଲାଖ ଭାବୁଛନ୍ତି ।

ରାତି ଚାରିଟାରୁ ପୋଖରୀ ପାଖକୁ ପ୍ରତିଘରୁ ଜଣେ ଜଣେ 'କ୍ଷୀର ପାତ୍ର' ଧରି ଧାଇଁଲେ । ସୂର୍ଯ୍ୟୋଦୟ ସମୟରେ ଯେବେ ମୁଖିଆ ଓ ଭଦ୍ରଲୋକମାନେ ଆସିଲେ କ୍ଷୀର ସାଗର ଉଦ୍‌ଘାଟନ କରିବାକୁ—ଗୋଳିଆ ପାଣି ପୋଖରୀକୁ ଦେଖି ଛି ଛା କରି ଚାଲିଗଲେ । ଗାଆଁ ମୁଖିଆଙ୍କୁ ଭୀଷଣ ଅପମାନ ଲାଗିଲା ।

ସଙ୍ଗେ ସଙ୍ଗେ ଗାଁ ସାରା ଲୋକଙ୍କୁ ଡକରା ହେଲା— ସତକଥା ଜଣା ପଡିଲା— ସମସ୍ତେ ପାଣି ଢ଼ାଳିଛନ୍ତି — କ୍ଷୀର ନୁହେଁ ।

ଏଇ ଗଳ୍ପଟି ଶୁଣିଲା ପରେ ସମସ୍ତେ ହସି ଉଠିଲେ । ମାନୁବାବୁ କହିଲେ— ଏଇ ଗଳ୍ପରୁ ଆମକୁ ଶିକ୍ଷା ନେବାକୁ ହେବ । ଆମେ ସବୁ ନିଜକୁ ଅତି ଚାଲାଖିଆ ଭାବି ଠକିଲେ— ଆମେ ସମସ୍ତେ ଠକିଯିବା । ମାଲିକମାନେ ଆମକୁ ଚିରଦିନ ଶୋଷଣ କରୁଥିଲେ । ତେଣୁ ଇଜ୍ଜତ ରକ୍ଷା କରିବାକୁ ହେବ । ହଉ ! ଆସନ୍ତା ରବିବାର ଦିନ ଠିକ୍ ସମୟରେ ଆସିବ । ସମସ୍ତେ ହଁ— ଆଜ୍ଞା ନିଶ୍ଚୟ ଆସିବୁ କହିଲେ । ମାନୁବାବୁ ସାଇକେଲ ଧରି ଆଗକୁ ଆଗକୁ ମାଡ଼ି ଚାଲିଲେ ।

ଚିକିଟା ଅନ୍ଧାର । ମୁହଁକୁ ମୁହଁ ଦିଶୁନି । ମାନୁବାବୁ ରାସ୍ତା ଠଉରେଇ ସାଇକେଲ ଚଳାଇଥାନ୍ତି । ମଝିରେ ମଝିରେ ଟର୍ଚ୍ଚ ମାରି ରାସ୍ତାକୁ ନଜର କରୁଥାନ୍ତି । ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିବାକୁ କୋଶେ ବାଟ ଅଛି । ଜଙ୍ଗଲିଆ ରାସ୍ତା ପାର ହେଲେ ଗାଁ ଆଲୁଅ ଦେଖାଯିବ । ସଞ୍ଜ ହେଲେ ଜଙ୍ଗଲିଆ ରାସ୍ତାରେ ବେଶି ଯାଆ-ଆସ ହୁଏ ନାହିଁ । ମାନୁବାବୁ ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପାଇଁ ସାଇକେଲ ଗତିକୁ ବଢ଼ାଇ ଦେଇଛନ୍ତି ।

ହଠାତ୍ ଭାଲୁଖିଆ ପୋଲ ତଳୁ ଦୁଇଜଣ କଳା ପୋଷାକ ପିନ୍ଧିଥିବା ଲୋକ ରାସ୍ତା ଉପରେ ଠିଆ ହୋଇଗଲେ । ହାତରେ ମାରଣାସ୍ତ୍ର ! ଅଚାନକ ଶକ୍ତ ପ୍ରହାରରେ ମାନୁବାବୁ ସାଇକେଲ ସହ ତଳେ ପଡିଗଲେ । ରାସ୍ତାର ଆବୁଡ଼ାଖାବୁଡ଼ା ଗେଟି ବାଜି ମାନୁବାବୁଙ୍କ ବାଁ ହାତ ପାପୁଲିଟା ରକ୍ତରେ ଜୁଡୁବୁଡୁ ହୋଇଗଲା । ଟର୍ଚ୍ଚ ପକାଇଲା କ୍ଷଣି ଦୁଇ ଜଣ ନୀରବ ନିଶ୍ଚଳ ହୋଇ ଠିଆ ହୋଇଛନ୍ତି । ମୁଣ୍ଡରେ କଳା ଢ଼ାଙ୍କୁଣିଟା ଦେବାକୁ ଭୁଲି ଯାଇଛନ୍ତି । ମୁହଁକୁ ଟର୍ଚ୍ଚ ପକାଇଲା ବେଳେ ଦୁହେଁ ବୋକାଙ୍କ ଭଳି ଅନାଇଛନ୍ତି । ମାନୁବାବୁ ଦୁହିଁଙ୍କୁ ଚିହ୍ନି ପାରି କହିଲେ— କିରେ କାଇରା ! ବୀର ସିଂ— ଏତେ ରାତିରେ ଏଠି କ'ଣ କରୁଛ ?

ମାନୁବାବୁଙ୍କ ସେହି ସ୍ୱଭାବ ସୁଲଭ ସ୍ନେହ ଆଦରବୋଳା ଡାକ କାଇରା, ବୀର ସିଂଙ୍କ ଚିନ୍ତା ଚଇତନକୁ ଦୋହଲାଇ ଦେଲା । ଦୁହେଁ ନିରୁତ୍ତର । ମାନୁବାବୁ କହିଲେ-- କାଇରା— ପୁଅ ଜ୍ୱର ପରା ଛାଡ଼ି ଗଲାଣି । ସେ ଟଗଲାଟା ସ୍କୁଲକୁ ଯାଉଛି ନା !

କାଇରା ନିରୁତ୍ତର ।

— ବୀର ସିଂ—ମା'ଙ୍କୁ ଯେଉଁ ଔଷଧ ଆଣି ଦେଇ ଥିଲି ସେ ଭଲ ହୋଇଗଲେଣି ?

ବୀର ସିଂ ନିରୁତ୍ତର । ନିଶା ଛାଡ଼ିଯାଇଛି । ଦୁହିଁଙ୍କ ମାନସ ଚକ୍ଷୁରେ ନାଚିଗଲା ସେଦିନର ହୃଦୟ ବିଦାରକ ଦୃଶ୍ୟ । କାଇରାର ସାତବର୍ଷର ପୁଅକୁ ଭୀଷଣ ଜ୍ୱର । ଘରେ ଦିଅଁ ଦେବତା ପୂଜା ଚାଲିଛି । ଜ୍ୱର କମୁନି— ସେ ବାଉଳି ହେଉଛି । ମରିଯିବି-ମରିଯିବି ବୋଲି କହୁଛି । ଏଇ ମାନୁବାବୁ କାଇରା ପୁଅକୁ ବୁଝେଇସୁଝେଇ ସ୍କୁଲକୁ ପଠାଇଥିଲେ । ପୁଣି ଜ୍ୱରବେଳେ ନିଜେ କାନ୍ଧରେ ଝୁଲାଇ ଡାକ୍ତରଙ୍କ ପାଖକୁ ନେଇ ଜ୍ୱର ଭଲ କରିଦେଇଥିଲେ ।

ଆଉ ବୀରସିଂହର ବୁଢ଼ୀ ମା' ମରୁମରୁ ବଞ୍ଚି ଯାଇଥିଲା ଏଇ ମାନୁବାବୁଙ୍କ ଯୋଗୁ ।

ଏଇ ସବୁକଥା ଭାବୁଭାବୁ ଦୁହିଁଙ୍କ ହାତରୁ ମାରଣାସ୍ତ୍ର ଆପେ ଆପେ ଖସି ପଡ଼ିଲା । ସେମାନେ ମାନୁବାବୁଙ୍କ ଗୋଡ଼ ତଳେ ପଡିଯାଇ ଭୋ ଭୋ ହୋଇ କାନ୍ଦି ପକାଇ ରାସ୍ତାରେ ମୁଣ୍ଡ ପିଟିବା ଆରମ୍ଭ କଲେ ।

ମାନୁବାବୁ ସେମାନଙ୍କୁ ଉଠାଇ ସବୁକଥା ପଚାରିଲେ । ସେମାନେ ସବୁକଥା କହିଦେଲେ । ମଧୁ ମହାନ୍ତି—ଠିକାଦାର—ପୁଲିସ ଅଫିସର କଥାରେ ମାନୁବାବୁଙ୍କୁ ଖତମ୍ କରି ଦେବାକୁ ଆସିଥିଲେ । ଏ କାମ କରିଥିଲେ ଦଶହଜାର ଟଙ୍କା ବକ୍‌ସିସ୍ ପାଇଥାନ୍ତେ ।

ମାନୁବାବୁ ସବୁ କଥା ଶୁଣି କହିଲେ— କାଇରା ! ବୀର ସିଂ !! ମୁଁ ତୁମକୁ ଦଶଟଙ୍କା ଦେଇପାରିବି ନାଇଁରେ । ତୁମର ଟଙ୍କା ଦରକାର ? ମୋତେ ମାରିଦିଅ— ଦଶହଜାର ଟଙ୍କା ପାଇବ ।

ଦୁହେଁ ଆହୁରି ଜୋରରେ ଭୋ ଭୋ ହୋଇ କାନ୍ଦି ପକାଇଲେ । କାଇରା ଗର୍ଜି ଉଠି କହିଲା— ବୀର ସିଂ-ଚାଲ-ହାରାମଜାଦା ମଧୁ ମହାନ୍ତି— ଶଇତାନ ଠିକାଦାର— ବଦମାସ ପୁଲିସ ଅଫିସରକୁ ଜୀବନରେ ଶେଷ କରିଦେବା ।

ଦୁହେଁ ଏତକ କହି ଦଉଡ଼ିବା ଆରମ୍ଭ କଲେ । ମାନୁବାବୁ କାଇରା— ବୀରସିଂ-କାଇରା ବୀରସିଂ ଡାକ ଛାଡୁଥାନ୍ତି ।

ପ୍ରାୟ ବର୍ଷକପରେ ମାନୁବାବୁ ଶୁକୁରା ମାଝୀ ଘରକୁ ବୁଲି ଯାଇଥିଲେ । ବାବୁଙ୍କୁ ଦେଖି ଫୁଲ ମୁରୁକି ହସି ଦେଇ ପାଦ ଛୁଇଁ ପ୍ରଣାମ କଲା ।

— ଫୁଲ ! ଆଉ ସବୁ ଖବର କ'ଣ ?

ଫୁଲ କିଛି କହିବା ପୂର୍ବରୁ ଶୁକୁରା କହିଲା— ବାବୁ ! ଫୁଲର ସୁନାମୁଣ୍ଡା ପରି ବକଟେ ପୁଅ ହୋଇଛି ।

— ଫୁଲ ! ପୁଅ ହୋଇଛି ! ମାନୁବାବୁ ଆନନ୍ଦର ବନ୍ୟାରେ ସତେ ଯେମିତି ଭାସିଗଲେ ।

ଫୁଲ ମୁହଁ ତଳକୁ କରି କହିଲା— ହଁ, ବାବୁ ! ଭାରି ସୁନ୍ଦରିଆ ପୁଅଟେ ହୋଇଛି ।

ଫୁଲର ଅନେକ ପରିବର୍ତ୍ତନ । ଦେହ ଆଉ ମନରେ । ବର୍ଷକ ତଳର ଫୁଲକୁ ଆଜିର ଫୁଲ ସହିତ ତୁଳନା କଲେ ସତେ କେତେ ତଫାତ୍ ? ସେଦିନର ଦୁଃଖିନୀ ଅଭାଗିନୀ ଫୁଲ ଆଜି ଯୌବନର ଦରିଆରେ ଉବୁଟୁବୁ ହେଉଛି । ଦେହରେ ତା'ର କେତେ ଯେ ବସନ୍ତ କଳି ହୁଏନା । ସନ୍ତାନ ଜନ୍ମ ପରେ ସୁଦ୍ଧା ଫୁଲର ଯୌବନ ନଷ୍ଟ ହୋଇନି— ବରଂ ମାତୃତ୍ୱର ମହିମାରେ ଶତଗୁଣିତ ହୋଇ ଉଠିଛି ତାର ସ୍ୱଚ୍ଛନ୍ଦ ସୌନ୍ଦର୍ଯ୍ୟ ।

ଫୁଲ ହସି ହସି କହିଲା— ବାବୁ ! ଦେଖିବୁ ମୋ ପୁଅକୁ ! ଫୁଲ ନାଲି ଗୁଲୁଗୁଲୁ ପୁଅଟିକୁ ବଢ଼ାଇଦେଇ କହିଲା— ବାବୁ, ତୁ କେତେ ବୁଦ୍ଧିଆରେ । ତୋର କେତେ ବୁଦ୍ଧି । ତୋରି କଥାରେ ପଡ଼ି ମୁଁ ନୂଆ ଜନମ ପାଇଲି । ତୁ ଆମର ସାକ୍ଷାତ ଭଗବାନ ।

— ଶାଶୁ ମାରୁଛି ତ ?

— ହୁଁ- ଶାଶୁ ଆଉ କାହିଁକି ମାରିବେ ? ସେ ତ ମୋତେ ଭାରି ଭଲ ପାଉଛନ୍ତି । ଶଶୁର ବି— ଦଣ୍ଡେ ନଦେଖିଲେ ପାଣି ପିଉ ନାହାନ୍ତି ।

— ଫୁଲ ! ସାବଧାନ ! ବେଶୀ ପାଣି ପିଇଲେ ଥଣ୍ଡା ଧରି ସନ୍ନିପାତ ହେଇଯିବ ଯେ—

ଶୁକଦେବ ମାଝୀ, ଫୁଲ ଠୋ ଠୋ ହୋଇ ହସି ଉଠିଲେ । ମାନୁବାବୁ ମଧ୍ୟ ତାଙ୍କ ହସରେ ସହଯୋଗ କଲେ । ସେତେବେଳକୁ ଗାଁରୁ ନେତାବାବୁଙ୍କ ଆସିବା ଖବର ପାଇ ଶୁକୁରା ମାଝୀ ଘରେ ପ୍ରାୟ ତିରିଶ ଜଣ ପହଞ୍ଚିଗଲେଣି । ଚାରିଆଡ଼ର ଖବର ପଡ଼ିଲା । ମାନୁବାବୁ ଭଲ ମନ୍ଦ ଖବର ପଚରା ଉଚରା କଲେ । ତିନିଚାରିଟା ଖଟିଆ ପଡିଥିଲା । ସେଥିରେ ପିଣ୍ଡାରେ, ତଳେ ଯିଏ ଯେମିତି ସୁବିଧା ନେଇ ବସି ନେତାବାବୁଙ୍କ କଥା ଶୁଣୁଥାଆନ୍ତି .

ଫୁଲ ତ ଗାଁ ଝିଅ । ଲାଜ କରିବ କାହିଁକି ? ଯାହା ବା ଲାଜ କରନ୍ତା ପାଟପୁର ଅଞ୍ଚଳରେ ଜମିଦଖଲ ଆନ୍ଦୋଳନ ପରେ ନୂତନ ଜନଜାଗରଣ ସୃଷ୍ଟି ହୋଇଛି । ଚାଲିଚଳଣ, ଢ଼ଙ୍ଗ ଢ଼ାଙ୍ଗ, ଆଚାର ବ୍ୟବହାରରେ ପରିବର୍ତ୍ତନ ଘଟିଛି । ପରିବର୍ତ୍ତନ ଫୁଲର ବି ଘଟିବା ସ୍ୱାଭାବିକ । ଫୁଲ ମଧ୍ୟ ସେଠାରେ ଗୋଟିଏ ଖଟିଆରେ ପୁଅକୁ କୋଳରେ ଧରି ବସିଲା । ଗାଁରୁ ତିନିଜଣ ବୁଢ଼ୀ ଆସି ଫୁଲ ପାଖରେ ବସିଲେ ।

ପ୍ରାୟ ସେଠାରେ ସମସ୍ତେ ମାନୁବାବୁଙ୍କ କଥାକୁ ପାଣିଭଳି ପିଇ ଯାଉଥାଆନ୍ତି । ଏହି ସମୟରେ ଛୁଆଟି କାନ୍ଦି ଉଠିଲା । ଫୁଲ ଯେତେ ଓ-ଓ କହି ଥାପୁଡେଇଲା କାନ୍ଦ ବନ୍ଦ ହେଲାନି । ଶୁକୁରା ପାଟି କରି କହିଲା— ଫୁଲ ! ପୁଅକୁ କ୍ଷୀର ଖୋଇଦେ ।

ଫୁଲ ଛାତିରୁ ଲୁଗା ଆଡ଼େଇ ଦେଇ ଛୁଆକୁ କ୍ଷୀର ଖୋଇଲା । ଛୁଆଟା ଚଁ ଚଁ କରି କ୍ଷୀର ଶୋଷିନେଲା । କ୍ଷଣିକ ମଧ୍ୟରେ କାନ୍ଦ କୁଆଡ଼େ ବନ୍ଦ ହୋଇଗଲା । ମାନୁବାବୁ ଖାଦାନ ଶ୍ରମିକ ଆନ୍ଦୋଳନ କଥା ପକାଇଥିଲେ । ସମସ୍ତେ ଶୁଣିବାରେ ବ୍ୟସ୍ତ । ଫୁଲ ବି ବାବୁ କଥା ପାଣିଭଳି ପିଇ ଯାଉଥିଲା ।

ମାନୁବାବୁ ଖାଦାନ ଲଢ଼େଇ କଥା କହିସାରି ଅନ୍ୟ ଗାଁକୁ ଚାଲିଗଲେ ।

ରାତି ପାହି ସକାଳ ହେଲାଣି । ଓଦାମାଟିର ବାସ୍ନା ସ୍ପଷ୍ଟ ବାରି ହେଉଥାଏ । ସୁଲୁସୁଲିଆ ଅଳ୍ପ ଅଳ୍ପ କୋହଲା ପବନ ବାଜି ଦେହଟା ଶୀତେଇ ଉଠୁଥାଏ । ଯେଝାକାମରେ ଯିଏ ବାହାରିଯିବାକୁ ସଜବାଜ ହେଉଛନ୍ତି । ଦାନ୍ତକାଠି ପାଟିରେ ପୂରାଇ ଶୁକୁରା ଫୁଲକୁ କହିଲା— "ହେ.... ! ଶୁଣୁଛୁ ! ମଧୁ ମହାନ୍ତି ଆମ ବିଲରେ ପାଞ୍ଚଟା ହଳ ପକେଇଛି । ଶଳା ! କହୁଥିଲା— ଏ ବର୍ଷ ଆଉ ଜମିଦଖଲ କରିବ ନାହିଁ ।"

"ଆଉ ଅନେଇଛ କ'ଣ ? ପାଁ ଜାଣଙ୍କୁ ଡାକି ନେଇ ହଳ ବନ୍ଦ କରୁନା ?" ସିଲ୍‌ଭର ବାସନଗୁଡ଼ା ପାଉଁଶରେ ମାଜୁ ମାଜୁ ଫୁଲ ସ୍ୱାମୀକୁ ପରାମର୍ଶ ଦେଲା ।

କାଳ ବିଳମ୍ବ ନକରି ଶୁକୁରା ଦାନ୍ତକାଠିଟାକୁ ଚିରି ଜିଭ ଛେଲି ମୁହଁ ଧୋଇଲା । ଚିରା ଗାମୁଛାଟା ଅଲଗୁଣୀରୁ ଆଣି ଅଣ୍ଟାରେ ଭିଡିଦେଇ କହିଲା— "ଅଛି କି ଟିକେ—ପିଇ ଦେଇ ଯାଆନ୍ତି ।"

ଫୁଲ କହିଲା— "ଆଟିକାରେ ଢ଼ଙ୍କା ହୋଇଛି— ଦି' ଠୋଲା ପିଇ ଦେଇ ଯା ।"

ଶୁକୁଟା ସିଲ୍‌ଭର ବେଲାଟା ଫୁଲ ପାଖରୁ ନେଇ ଘର ଭିତରେ ଅଧବେଲାଏ ହାଣ୍ଡିଆ ଢ଼କ ଢ଼କ କରି ପିଇଦେଇ ଗାଁ ଭିତରକୁ ବାହାରିଗଲା ।

ଗାଁରୁ ତିନିଜଣଙ୍କୁ ଡାକିନେଇ ଶୁକୁରା ବିଲ ପାଖରେ ପହଞ୍ଚିଲା । ମଧୁ ମହାନ୍ତି ହିଡ଼ ଉପରେ ଛତା ଧରି, ବସିଥିଲା । ଚାଇଁ ଚାଇଁଆ ଖରା । ପାଞ୍ଚଟା ହଳ ଧାଡ଼ି ହୋଇ ବୁଲୁଥିଲେ ।

ମଧୁ ମହାନ୍ତି ଶୁକୁରାକୁ ଦେଖି ଆଖିପତା ଟେକି ପଚାରିଲା— କିବେ ଶୁକୁରା ! କୁଆଡ଼େ ଆସିଲୁ ? ଶୁକୁରା ନମ୍ର କଣ୍ଠରେ କହିଲା— ମାମୁଁ । ତୁ

କହିଥିଲୁ ପରା ଆଉ ଜମି ଦଖଲ କରିବୁନି । ଏ ସାଲେ ଛାଡ଼ିଦେବୁ । ପୁଣି କିଆଁ ହଳ ପକେଇଲୁ ?

ମଧୁ ମହାନ୍ତି ଗମ୍ଭୀର ହୋଇ ଜବାବ ଦେଲା— ତୋ' ବାପର ଜମି ଏ ଶଳା ? ଟଙ୍କା କରଜ ନେଇଥିଲୁ । ବିକ୍ରି କବଲା ଅଛି ମୋ ପାଖରେ— ଜମି ମୋର ।

ଶୁକୁରା କାକୁତି ମିନତି ହେଲା ଭଳି କହିଲା— ମାମୁଁ ! ତୁ ଏତେ ମିଛ କହୁଛୁ ? ଦି' ସାଲେ ହେଲା ସବୁ ଟଙ୍କା ଶୁଝି ଦେଇଛି । ପୁଣି ସେ କରଜଟଙ୍କା କଥା ଉଠଉଛୁ ?

''ଯା-ବେ-ବେଶୀ ଭଡ଼ ଭଡ଼ ହୋ'ନା । ଜମିରୁ ବାହାର କହୁଛି ।'' ମଧୁ ମହାନ୍ତି ରାଗି ଗରଗର ହୋଇ ଶୁକୁରା ପାଖକୁ ଚାଲି ଆସିଲା ।

ଶୁକୁରା ଅନ୍ୟମାନଙ୍କୁ ସାକ୍ଷୀ ଦେଇ କହିଲା— ଦେଖ ଭାଇ ! ତୁମେ ଦେଖିଥା— ମାମୁଁ କିମିତି ମୋ ଜମି ଜବର ଦଖଲ କରୁଛି ।

'ବାବୁ— ଫରେଷ୍ଟର ଅଫିସ୍ ପାଖରେ ତୁମେ ପରା କହିଥିଲ— ଶୁକୁରା ଏଇ ସାଲେ ଜମି ଚାଷ କର ।' ଜଣେ ଲୋକ କହିଲା ।

ମଧୁ ମହାନ୍ତି ନବାବୀ ସ୍ୱରରେ କହିଲା— କୋଉ ଫରେଷ୍ଟର ଅଫିସ ? ଏ ଜମି ବର୍ତ୍ତମାନ ମୋର ।

ଶୁକୁରା କହିଲା— ମାମୁଁ ! ଏ ସବୁ ଭଲ କଥା ନୁହେଁ ।

ମଧୁ ମହାନ୍ତି ଛତାଟାକୁ ଫଡ଼କିନା ମାରିଦେଇ ଦାନ୍ତ କଡ଼ମଡ଼ କରି କହିଲା— ଶଳା ! ଗୁଣ୍ଡା ନେଇ ଆସିଛୁ । ମାରିବୁ କିବେ ? ନିକାଲ୍ ମୋ ଜମିରୁ— ନିକାଲ୍ ।

ଶୁକୁରାକୁ ଛତାରେ ଭୂଷି ଜମିରୁ ବାହାର କରିଦେଲା । ଶୁକୁରା ରାମ୍‌ବୋଲ କିଛି ନ କହି ଜମିରୁ ବାହାରି ଆସିଲା । ସଙ୍ଗରେ ଯାଇଥିବା ସାକ୍ଷୀ ତିନିଜଣ ମଧ୍ୟ ପଳେଇ ଆସିଲେ ।

ଘରେ ପହଞ୍ଚି ଫୁଲକୁ ଶୁକୁରା ସବୁକଥା କହିଲା । ଫୁଲ ଛଅ ମାସର ଛୁଆକୁ କ୍ଷୀର ଖୁଆଉ ଥିଲା । ଶୁକୁରା କଥା ଶୁଣି କହିଲା— ଦେଖୁଛୁ ତ

ଛୁଆକୁ— କେତେ ଦିନ କ୍ଷୀର ଖାଇ ବଞ୍ଚିବ ଏ ଛୁଆ ? ଛୁଆ କ'ଣ ଭୋକ ଉପାସରେ ମରିଯିବ ? ରକତ ପାଣି କରି ମାଟି ତାଡ଼ିଲେ— ଜମି କଲେ— ଶେଷକୁ ତଣ୍ଟିକଟା ଜବର ଦଖଲ କରିବ ? ତୋ ମାଆକୁ ଯଦି କିଏ ନେଇଯାଏ— ତୁ ଦିହ ସମ୍ଭାଳି ରହିବୁ ? ଆମେ ତ କଅଲ ବିକଲ ହୋଇ ମରିବା— ସେ ବଦମାସଟାକୁ ଛାଡ଼ିଦେବା କାହିଁକି ? ଯା— କାଣ୍ଡ ଚିଆରଟା ନେଇ ଯା—ବିନ୍ଧି ଦେ— ଜିଅଲ ଯିବୁ ପଛେ— ଛୁଆକୁ ଦୁଃଖ କଷ୍ଟରେ ପୋଷିବି । ଗାଉଟର ମଧୁ ମହାନ୍ତି ଅତ୍ୟାଚାରରୁ ହେଲେ ଜାତିଭାଇ ରକ୍ଷା ପାଇଯିବେ ।

ଶୁକୁରା ଚିନ୍ତାମଗ୍ନ ହୋଇ କହିଲା— ଫୁଲଲୋ ! ଶଳାକୁ ଜୀବନରେ ମାରି ଦେବାକୁ କହୁଛୁ !

ଫୁଲ ଛୁଆଟିକୁ ମାଟିରେ ଗଡ଼ାଇ ଦେଇ ଚାଳରେ ଖୋସା ଯାଇଥିବା କାଣ୍ଡ ଚିଆରକୁ ଆଣି ଶୁକୁରା ହାତକୁ ବଢ଼ାଇ ଦେଇ କହିଲା— ଯା— ଏକା ଶରକେ ଖତମ୍ କରିଦେବୁ—ଯିଏ ମା' ଭଉଣୀର ଇଜ୍ଜତ ନେଇଛି— ଟଙ୍କା ପଇସା, ଧନ ସମ୍ପତ୍ତି, ଜମିବାଡ଼ି ଲୁଟି ନେଇଛି— ଲୋକଙ୍କୁ ହଇରାଣ ହରକତ କରୁଛି— ଆମ ଜାତିଭାଇ ଗୁଡ଼ା ତା' ଦାଉରେ ବାଟ ଚାଲି ପାରୁନାହାନ୍ତି । ଗୋଟାଏ ମଧୁ ମହାନ୍ତି କ'ଣ, ମେଞ୍ଚା ମେଞ୍ଚା ମଧୁ ମହାନ୍ତିଙ୍କୁ ମାରିଦେଲେ ପାପ ହେବନି । ବରଂ ପୁଣ୍ୟ ହେବ । ଧର୍ମ ହେବ । ଲୋକେ ଶାନ୍ତିରେ ନିଃଶ୍ୱାସ ମାରିବେ । ତୁ ଯଦି ଡରିବୁ— ସେ ତ ବେଶୀ ଅତ୍ୟାଚାର କରିବ । ସେ ଅତ୍ୟାଚାର ଆମେ ଆଉ ସହିପାରିବୁ ନାହିଁ । ନେତା ବାବୁ କଥା ତୋ'ର କ'ଣ ମନେ ନାହିଁ ?

ଶୁକୁରା କାଣ୍ଡଚିଆର ଖୁବ୍ ଶକ୍ତ କରି ଧରି ଫୁଲ ଆଖିରେ ଆଖିର ପଲକ ପକାଇ କହିଲା— ସେଟା ବାବୁ ଲୋକ— ତା'ହାତରେ ପୋଲିସ୍ ଅଛି— ସରକାର ଅଛି ।

ଫୁଲ ଚିଡ଼ି ଉଠି କହିଲା— ରଖ ତୋ ପୋଲିସ ସରକାର । ଜୀବନରେ ଥିଲେ ସିନା ପୋଲିସ୍ ସରକାର ପାଖକୁ ଯିବ— ମରିଗଲେ କ'ଣ ମୁର୍ଦ୍ଦାରଟା କଥା କହିବ ?

ଶୁକୁରା ମୁହଁ ତଳକୁ କରି କହିଲା— କଥାଟା ଭଲ ହେବ ନାହିଁ ଲୋ ଫୁଲ ।

ଫୁଲ ଛିଣ୍ଡା ଶାଢ଼ୀ କାନିକୁ ଅଣ୍ଟାରେ ଭିଡିଦେଇ କହିଲା— "ମରଦ ହେଇଛି— ମରଦ ! ଯା— ଶାଢ଼ୀ ଚୁଡ଼ି ପିନ୍ଧି ଘରେ ବଅ— ଦେ-ଦେ ମୋତେ କାଣ୍ଡ ଟିଆର—"

ଫୁଲ କାଣ୍ଡଟିଆରକୁ ଶୁକୁରା ହାତରୁ ଛଡ଼ାଇ ନେଇ ବୀରା ରମଣୀର ସ୍ୱରୂପ ଧରି କହିଲା— ଢିଅଲ ତ ଯିବି, ଛୁଆ ତୋତେ ଲାଗିଲା ।

ଶୁକୁରା ଲଜ୍ଜିତ, ଅପମାନିତ ହୋଇଗଲା । ଅତୀତର ମରଦ ପଣିଆକୁ ସ୍ମରଣ କରି କହିଲା— ଦେ'ଲୋ ଦେ— କାଣ୍ଡଟା ଦେ— ଏଇକ୍ଷଣି ଯାଉଛି— ଶଳାକୁ ମାଟିରେ ଗଡାଇ ଦେବି ।

ଫୁଲ ହାତରୁ କାଣ୍ଡ ଟିଆରଟା ଛଡେଇ ନେଇ ଶୁକୁରା ଏକମୁହାଁ ଦଉଡିଲା ।

ଶୁକୁରାର ସର୍ବାଙ୍ଗ ଶରୀରରେ ବୀରରକ୍ତ ନଦୀର ସ୍ରୋତ ଭଳି ମାଡ଼ି ଚାଲିଛି । ଯୁଦ୍ଧ କ୍ଷେତ୍ରକୁ ଛୁଟି ଚାଲିଛି— ଜଘନ୍ୟ ଶତ୍ରୁ ମଧୁ ମହାନ୍ତିକୁ ଚିର ଦିନ ପାଇଁ ମାଟିରେ ମିଶାଇଦେବ । ପାପୀକୁ ହତ୍ୟା କରି ମହାପୁଣ୍ୟ ଅର୍ଜନ କରିବ । କାରାବାସ ଶୁକୁରା ପକ୍ଷରେ ଅଭିଶାପ ନ ହୋଇ ଆଶୀର୍ବାଦ ହେବ । ଗର୍ବରେ ଶୁକୁରାର ଛାତି ଫୁଲି ଉଠୁଛି । ଗୋଡ଼ ତା'ର ତଳେ ଲାଗୁନି । ସତେ ଯେମିତି ଉଡିଯାଉଛି ।

ପାଣିଖରାଟା ଟାଇଁ ଟାଇଁ ଦେହରେ ଗଳିଯାଉଛି । ହଳିଆମାନଙ୍କ ଦେହରୁ ଝାଳ ଗମ୍‌ଗମ୍ ହୋଇ ବୋହୁଛି । ମଧୁ ମହାନ୍ତି ଗଞ୍ଜେଇ ଚିଲମଟାକୁ ମୁହଁରେ

ଲଗାଉଥିଲା । ଦୂରରୁ ଦେଖିଲା ଶୁକୁରା ଆସୁଛି । ସାଙ୍ଗରେ ଲୋକ ନାହାନ୍ତି । ଏକା ଏକା ଆସୁଛି— ଫୁଙ୍ଗୁଲା ହାତରେ ଆସୁନି— ଆଣିଛି ମାରଣାସ୍ତ୍ର— ଆଦିବାସୀମାନଙ୍କର ପ୍ରଧାନ ଅସ୍ତ୍ର—ବଞ୍ଚି ରହିବାର ହତିଆର କାଣ୍ଡ ଟିଆର । ମଧୁ ମହାନ୍ତି ମନରେ ଆଶଙ୍କା ଆଣିଲା । ଦକ ପସିଲା । ଛାତିକୁ ଛନକା ଛୁଇଁଲା । ଗଞ୍ଜେଇ ଚିଲମଟା ମୁହଁରୁ କାଢ଼ି ମୁହୂର୍ତ୍ତେ ଶୁକୁରାର ଆସିବା ପଥକୁ ଚାହିଁ ରହିଲା ।

ଶୁକୁରା ବିଲରେ ପହଞ୍ଚି ଭୋକିଲା ବାଘ ଭଳି ଗର୍ଜି ଉଠିଲା— ମଧୁ ମହାନ୍ତି ! ବିଲରୁ ବାହାର କହୁଚି । ଭଲରେ ନ ଗଲେ ମାଟି ମା' ଦେହରେ ତୋ ପଚା ଦେହଟାକୁ ମିଶାଇଦେବି ।

ଭିତରେ ବରଡ଼ାପତ୍ର ପରି ଥରୁଥିଲେ ହେଁ ଉପରେ ବହପ ଦେଖାଇ ମଧୁ ମହାନ୍ତି ଗଞ୍ଜେଇ ଚିଲମଟାକୁ ମୁହଁରେ ଲଗାଇ ଦମେ ଟାଣିନେଇ କହିଲା— କିବେ— ଭାରି ତ ବହପ ହେଇଯାଇଛି । ଶଳା ! ଧନୁତୀର ଦେଖାଉଛି— ଯା-ଯା- କେତେ ଧନୁତୀର ଦେଖିଛି । ବେଶୀ ପାଟି କଲେ ଜାଣିଥା ଶୁକୁରା— ଜେଲ୍‌ରେ ପୂରାଇ ଦେବି ।

ଶୁକୁରା ତୀରଟା ଉଞ୍ଚାଇ ବୀରଦର୍ପରେ କହିଲା— ଖବରଦାର୍ ମଧୁ ମହାନ୍ତି— ଜିଅଲ କଥା କହି ମୋତେ ଡରାଇ ପାରିବୁ ନାହିଁ । ଜିଅଲ ଯିବା ପାଇଁ ଡରୁ ନାହିଁ । ତୋ' ଭଳି ଗୋଟାଏ ଜାନୁଆରକୁ ଆଜି ଜମିରୁ ନ ତଡିଲେ ଘରକୁ ଫେରିବିନାହିଁ । ବାହାର୍ ମୋ ଜମିରୁ କହୁଛି— ନହେଲେ ତୀର ଭିଡ଼ିଦେବି ।

ଶୁକୁରା ମଧୁ ମହାନ୍ତି ପାଟି ଗୋଳରେ ପାଞ୍ଚଟାଯାକ ହଳକୁ ବନ୍ଦ କରିଦେଲେ ହଠାତ୍ ହଳିଆମାନେ । ମଧୁ ମହାନ୍ତି ହଳିଆମାନଙ୍କୁ ନିର୍ଦ୍ଦେଶ ଦେଇ କହିଲା— ଶଳାକୁ ପିଟିପିଟି ମାରିଦିଅ ।

ଜଣେ ହଳିଆ ଉତ୍ତର ଦେଲା— ବାବୁ ! ଆମର କି ଦରକାର ? ଆମେ କାମ କରୁଛୁ— ମଜୁରୀ ପାଇବୁ । ଶୁକୁରା ଭାଇକୁ ଆମେ ମାରିପାରିବୁ ନାହିଁ ।

ମଧୁ ମହାନ୍ତି ଆଖି ଡିମା ଡିମା କରି ଦାନ୍ତ କଡମଡ଼ କରି ଜଣେ ହଳିଆଠାରୁ ପାଞ୍ଚଣଟା ଛଡ଼ାଇ ନେଇ କହିଲା— ଶୁକୁରା— ଏଇ ପାଞ୍ଚଣକୁ ଦେଖୁଛୁ ? ଜମିରୁ ବାହାର କହୁଛି— ନ ହେଲେ ହାରାମଜାଦାକୁ ପିଟିପିଟି ସାରା କରିଦେବି ।

ଶୁକୁରା ରାଗରେ ଜବାବ ଦେଲା— ତୁ ଶଳା ବାହାର କହୁଛି— ଡେରି କଲେ ହେଇ ଦେଖୁ ଥା'— ତୀର ମାରିଦେବି ।

ମଧୁ ମହାନ୍ତି ପାଞ୍ଚଣଟା ଉଞ୍ଚାଇ ଦଉଡ଼ି ଆସିଲା ବେଳେ ଶୁକୁରାର ତୀକ୍ଷ୍ଣ ତୀରଟା ପବନ ଭଳିଆ ଛୁଟିଗଲା ।

ଆଃ..... ଆଃ..... ଆଃ.....

ମଧୁ ମହାନ୍ତିର ଆର୍ତ୍ତ ଚିତ୍କାର ।

ତୀରଟା ତଣ୍ଟି ଫୁଟାଇ ଗଳିଯାଇଛି । କୁକୁଡ଼ାକୁ ବଳିଦେଲାବେଳେ ମୁଣ୍ଡବିହୀନ ଗଣ୍ଡିଟା ଯେପରି ଛଟପଟ ହୁଏ— ମଧୁ ମହାନ୍ତି ସେହିପରି ଲଙ୍ଗଳ ସିଅରୁ ବାହାରିଥିବା ଢ଼ିମା ଢ଼ିମା ମାଟିରେ ଛଟପଟ ହୋଉଥିଲା । ସତେ ଯେମିତି ରକ୍ତର ନଈ ବହିଯାଉଛି । ଛାନିଆଁରେ ପାଁ ଜଣ ହଳିଆ ଦଉଡ଼ି ପଳାଇଲେ ।

ଆନନ୍ଦ, ଗର୍ବ, ଉଲ୍ଲାସରେ ଥରି ଉଠିଲା ଶୁକୁରା । ମଣିଷର ଶତ୍ରୁ ପାପୀ ଅମଣିଷ ମଧୁ ମହାନ୍ତିର ରକ୍ତ ମାଟି ମା' ପିଇନେଇ ଶୋଷ ମେଣ୍ଟାଉଚି ।

.....ମଧୁ ମହାନ୍ତିର ନାଁଟା ଶୁକୁରା ମନରେ ଆସିଲାକ୍ଷଣି ଘୃଣାରେ ତା'ର ଶରୀରଟା ବିଷାକ୍ତ ହୋଇଗଲା । ଘୃଣାରେ ଦି' ଚାରିଥର ଥୁ ଥୁ କରି ଛେପ ପକାଇଲା ମଧୁ ମହାନ୍ତି ଉପରକୁ । ରାଗ ତା'ର ଶାନ୍ତ ହେଲାନି । ମଧୁ ମହାନ୍ତିର ଜୀବନଦୀପ ଲିଭିଲିଭି ଆସୁଥିଲା ବେଳେ ଆଖିଟା ତାର ଖୋଲା ଥିଲା । ଶୁକୁରା ମଧୁ ମହାନ୍ତି ଆଖିରେ ଧନୁର ଅଗ୍ରଭାଗଟି ଭୁଷି ଦେଲା ।

ଶେଷ ଚିତ୍କାର ଛାଡ଼ି ମଧୁ ମହାନ୍ତି ଢ଼ଳି ପଡ଼ିଲା ଫଟାମାଟି ଉପରେ ଚିରଦିନ ପାଇଁ । ମଲା ମୁର୍ଦ୍ଧାରଟାକୁ ଗୋଇଠା ମାରି ଶୁକୁରା କହିଲା— ଶଳା ! ଭାବିଚୁ ଏଇ ଜମିରେ ପଚି ପଚି ମରିବୁ— ନା-ନା ତା' କେବେ କରାଇ ଦେବିନି ।

ହଠାତ୍ ଶୁକୁରା ଆଖିରେ ପଡ଼ିଲା ହଳିଆ ଲଙ୍ଗଳ ଦଉଡିଟା ଛାଡ଼ି ଚାଲିଯାଇଛି । ସଙ୍ଗେ ସଙ୍ଗେ ଦଉଡ଼ିଟା ଆଣି ମୁର୍ଦ୍ଧାର ମୁଣ୍ଡରେ ଫାଶ ପକାଇ ପାଖ ଟାଙ୍ଗର ପଡିଆକୁ ନେଇଗଲା । ଗୋଟିଏ ବିରାଟ ପଥର ଉଠାଇଆଣି ମୁର୍ଦ୍ଧାର ମଧୁ ମହାନ୍ତି ମୁଣ୍ଡରେ କଚାଡ଼ି ଦେଲା । ମୁଣ୍ଡଟା ଚେପା ହୋଇଗଲା— ହାଡ ଗୁଡ଼ା ରଡ ରାଡ଼ ଭାଙ୍ଗିବାର ଶବ୍ଦ ହେଲା ।

ଶୁକୁରା ଆତ୍ମସନ୍ତୋଷରେ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲା— ଯାଃ, ଶଳାକୁ ଏଥର ଶାଗୁଣା ବିଲୁଆ ଦାୟିତ୍ୱରେ ଛାଡ଼ିଯାଉଛି ।

ଧନୁତୀରକୁ ମୁଣ୍ଡରେ ଛୁଇଁ ଶୁକୁରା ନାଳ ପାଖକୁ ଆସିଲା । ନାଳ ପାଣିରେ ବୁଡ଼ି ବୁଡି ରକ୍ତଗୁଡ଼ା ଦେହରୁ ଛଡ଼ାଇ ଦେଲା । ଧନୁତୀରକୁ ଭଲ୍‌କରି ଧୋଇ ଦେଇ ଘରକୁ ଫେରିଲା ।

ମଧୁ ମହାନ୍ତି ମରିଗଲା..... ଖବରଟା ନିମିଷକ ମଧ୍ୟରେ ପ୍ରଘଟ ହୋଇଗଲା ଚାରିଆଡ଼େ । ଗାଁ ଲୋକଙ୍କ ମୁହଁରେ ହସ ଫୁଟି ଉଠିଲା ।

ଶୁକୁରା ଗାଁ ଦାଣ୍ଡରେ ଚାଲିଛି । ମୁହଁରେ ହସ..... ଗଡ ଜୟ କରି ଫେରୁଛି । ଗାଁ ଛୁଆପିଲା ଠାରୁ ଆରମ୍ଭ କରି ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ଘରୁ ବାହାରି ଆସିଛନ୍ତି ଦାଣ୍ଡକୁ— ଶୁକୁରାକୁ ଅଭିବାଦନ ଜଣାଇବା ପାଇଁ ।

ଅଭିବାଦନ କଥାରେ ଜଣାଗଲା ନାହିଁ— ମୁହଁରେ—ହସରେ । ଶୁକୁରା ମୁହଁ ତେଜୋଦୀପ୍ତ, ଗାମ୍ଭୀର୍ଯ୍ୟରେ ପରିପୂର୍ଣ୍ଣ । ଆଖିରୁ ସତେ ଯେମିତି ଅଗ୍ନିସ୍ଫୁଲିଙ୍ଗର ଉଦ୍‌ଗୀରଣ ହେଉଛି— ସେ ଅଗ୍ନି ନୁହେଁ— ହେମନ୍ତର ବୁନ୍ଦା ବୁନ୍ଦା ଶିଶିର ବିନ୍ଦୁ ।

ଶୁକୁରା ପଛେ ପଛେ ଗାଁ ଲୋକେ ଛୁଟି ଚାଲିଛନ୍ତି । ସତେ ଯେମିତି ଏକ ବିରାଟ ଶୋଭାଯାତ୍ରା ବିଜୟ ଉଲ୍ଲାସରେ ଛୁଟି ଚାଲିଛି !

ଫୁଲ ଘର ଆଗରେ ପାଣି ମାଠିଆ ପାଖରେ ଛୋଟ ଛୁଆଟିକୁ କାଖେଇ ଠିଆ ହୋଇଥିଲା । ମନେ ମନେ ଭାବିଲା— ଲୋକଗୁଡ଼ା ବହୁତ ଆସୁଛନ୍ତି— ବୋଧେ ପୋଲିସ୍ ଆସିଯାଇଛି । ଏକ ଅଜଣା ଶିହରଣରେ ତା'ର ଦେହ ଥରିଉଠିଲା ।

ଶୁକୁରା ଦୂରରୁ ହସି ହସି କହିଲା— ଫୁଲ ! କଣ୍ଟା ଗଲା— ଶଳାକୁ ଖତମ କରିଦେଲି— ଦେ ମୁନ୍ଦେ ତୋରାଣି ଦେ— ଭାରି ଭୋକ..... ।

ଶୁକୁରା ଧନୁତୀରକୁ ଚାଳରେ ଖୋସି ଦେଇ ଫୁଲଠାରୁ ଛୋଟ ଛୁଆଟିକୁ ଆଣି କୋଳ କଲା । ଫୁଲ ଘର ଭିତରକୁ ଚାଲିଗଲା । ଶୁକୁରା ଲୋକଙ୍କ ଉଦ୍ଦେଶ୍ୟରେ କହିଲା— ଆଉ ଭାଇ ଦୁଃଖ କ'ଣ ? ଏଥର ଶତ୍ରୁ ମଲା— ଯାହାକୁ ଆମେ ସମସ୍ତେ ଘୃଣା କରୁଥିଲେ— ଡରୁଥିଲେ— ସେ ତ ଗଲା । ଏଥର ଟିକେ ଶାନ୍ତିରେ ନିଃଶ୍ୱାସ ମାର । ଆଉ ଘଡିକ ପରେ ପୁଲିସ୍ ପଲ ଛୁଟି ଆସିବେ । ମୋତେ ଜିଅଲକୁ ନେଇଯିବେ । କେତେବର୍ଷ ଜିଅଲ ଖଟିବି କହିହେଉନି । ମୋ ଛୁଆ ପିଲାଙ୍କୁ ଟିକେ ଘଣ୍ଟ ଘୋଡ଼ାଇ ରଖିଥିବ ।

ଛୋଟ ଛୁଆଟେ ଶୁକୁରା ହାତକୁ ଟାଣି ଧରିଲା । ଶୁକୁରା ଶିଶୁଟିକୁ ଫୁଲକୁ ବଢ଼ାଇ ଦେଲା ।

ଗତ ରାତିରୁ ଶୁକୁରା ଘରେ ଚୁଲି ଜଳିନଥିଲା । ଫୁଲ ହାଣ୍ଡିଆ ହାଣ୍ଡିଟା ପିଣ୍ଡାରେ ଥୋଇଦେଲା । ଶୁକୁରା କହିଲା— ଭାଇ ! ଆସ— ଆମେ ସମସ୍ତେ ମିଶି ହାଣ୍ଡିଆ ପିଇବା ।

ଅନ୍ୟମାନେ ନାଇଁ ନାଇଁ କରୁଥିଲା ବେଳେ ଶୁକୁରା ପତର ଠୋଲା ଧରାଇ ଦେଇ ଡଙ୍କେ ଡଙ୍କେ ହାଣ୍ଡିଆ ଢ଼ାଳିଦେଲା । ଶେଷକୁ ଗୋଟିଏ ବେଲାରେ ବେଲାଏ ହାଣ୍ଡିଆ ପାଟିକୁ ନେଲାବେଳକୁ ପୋଲିସ୍ ଗାଡ଼ିଟା ଭଁ ଭଁ ଶବ୍ଦ କରି ଘର ଆଡ଼କୁ ଛୁଟିଆସିଲା । ହାଣ୍ଡିଆ ବେଲାରୁ ମୁହଁ ଫେରାଇ ଦେଖିଲା—

ଲୋକମାନେ ହାଣ୍ଡିଆ ଠୋଲାରେ ଧରିଛନ୍ତି— କାହାରି ପାଟିକୁ ଯାଉନି । ପୋଲିସ୍‌ର ଭୟରେ ସେମାନେ ଜଡସଡ ହୋଇଗଲେଣି ।

ଶୁକୁରା କହିଲା— ଭୟ ନାହିଁ । ପିଅ ହାଣ୍ଡିଆ । ମୁଁ ରାଣ ପକାଉଛି ।

ଶୁକୁରା ଢ଼କ ଢ଼କ କରି ଏକାଥରେ ହାଣ୍ଡିଆ ବେଲାକ ପିଇ ଦେଲାବେଳକୁ ପୋଲିସ୍ ଅଫିସର ଛୋଟ ବାଡିଟା ଧରି ଶୁକୁରାର ଓଠକୁ ଟେକିଦେଇ କହିଲେ— କିବେ ଶଳା ! ମଣିଷ ମାରି ଆସି ହାଣ୍ଡିଆ ପିଉଛୁ । କିବେ— ମଧୁ ମହାନ୍ତିକୁ କାହିଁକି ମାରିଲୁ ?

ଶୁକୁରା ଠିଆ ହୋଇପଡ଼ିଲା । ପାଖରେ ଥିବା ଲୋକଙ୍କ ପାଟି ଯେମିତି ଯାବ ପଡ଼ି ଯାଇଛି ।

ଶୁକୁରା ନିର୍ଭୟରେ ଉତ୍ତର ଦେଲା— ହଁ, ବାବୁ ! ମୁଁ ମଧୁ ମହାନ୍ତିକୁ ମାରିଛି ।

ପୋଲିସ୍ ଅଫିସର ପଚାରିଲେ— କାହା ବୁଦ୍ଧିରେ ମାରିଲୁ ?

ଶୁକୁରା କହିଲା— ମୋ ନିଜ ବୁଦ୍ଧିରେ— ସେ ଶଳା ଆମ ସମସ୍ତଙ୍କୁ କଅଲ ବିକଲ କରି ମାରୁଥିଲା— ମୋ ଜମି ଜବର ଦଖଲ କଲା—

ଶୁକୁରା କଥା ଉପରେ ଆଉ ଜଣେ ପୋଲିସ୍ କହିଲା— ଆବେ ! ସେ ନେତାବାବୁ କଥାରେ ମାରିଛୁ କିବେ ?

ଶୁକୁରା କହିଲା— ନେତାବାବୁ ମଣିଷ ମାରିବାକୁ ଶିଖାଇନି— ମଣିଷ ବଞ୍ଚାଇବାକୁ ଶିଖାଇଛି । ତା' କଥାରେ କାହିଁକି ମାରିବି— ସତ କଥା କହୁଛି— ମୁଁ ମାରିଛି— ଦଣ୍ଡ ନେବାକୁ ରାଜି ଅଛି— ଯୋଉ ଦଣ୍ଡ ଦେବ ଦିଅ ।

ସଙ୍ଗେ ସଙ୍ଗେ ଦୁଇଜଣ କନେଷ୍ଟବଲ ଶୁକୁରା ହାତରେ ହାତକଡ଼ି ପକାଇଦେଇ ଗାଡ଼ିରେ ବସିବାକୁ କହିଲେ ।

ବଳଦ ବେକକୁ ଦଉଡ଼ିରେ ବାନ୍ଧିଲା ଭଳି ଶୁକୁରା ମାଝୀ ହାତରେ ହାତକଡ଼ି ପକାଇ ଦଉଡ଼ାଟାକୁ ପୋଲିସ୍ ଧରିଛି । ଶୁକୁରା ପଛକୁ ଅନାଇଁ କହିଲା— ''ଫୁଲଲୋ ! ଯାଉଛି ମାମୁଁ ଘର । ଦୁଃଖ କରିବୁ ନାହିଁ— ଜମି ଚଷିବୁ— ପୁଅ ଲାଗିଲା ତୋତେ ।

ଫୁଲ ଶିଶୁପୁତ୍ରକୁ କୋଳରେ ଧରି ନିର୍ନିମେଷ ନୟନରେ ଶୁକୁରାକୁ ଚାହିଁ ରହିଥିଲା । ସତେ ଯେମିତି ଆଖିରେ ବନ୍ୟାଜଳ ଶୁଖିଯାଇଛି ।

ପୋଲିସ ଅଫିସର୍ ଗର୍ଜି ଉଠିଲା— ଚାଲ୍‌ବେ ଶଳା ! ବସ୍ ଗାଡ଼ିରେ—

ଶୁକୁରା ପୋଲିସ ଘେରରେ ଯାଇ ଗାଡ଼ି ଭିତରେ ବସିଲା ! ସେଠାରେ ଥିବା ଲୋକଙ୍କ ଆଖିରେ ଖାଲି ଲୁହ— ପାଟିରୁ କଥା ବାହାରୁନି । ଶୁକୁରା ଗାଡ଼ି ଭିରରୁ କହିଲା— ଭାଇମାନେ, ମନ ଦୁଃଖ କରନା— ଜିଅଲ ଖଟି ପୁଣି ଫେରି ଆସିବି— ହେଲେ ଶଳା ମଧୁ ମହାନ୍ତି ଆଉ କେବେ ଫେରିଆସିବ ନାହିଁ— ନିର୍ଭୟରେ କାମ କର । ମୋ ଛୁଆ ପିଲା ଲାଗିଲେ— ଟିକେ ନିଘା ରଖିବ ।

ଗାଡ଼ିଟା ଭଁ ଭଁ ଶବ୍ଦ କରି ଗଡ଼ିବା ଆରମ୍ଭ କଲା । ଶୁକୁରା ହାତକଡ଼ିରେ ବନ୍ଧା ହାତଟାକୁ ଟେକି କହିଲା — ଫୁଲ..... ଫୁ......ଲ ।

ସମସ୍ତଙ୍କ ଭିତରେ ଜ୍ୱାଳା ଅଛି, ଅଗ୍ନିସ୍ଫୁଲିଙ୍ଗ ଅଛି— ତାହା ଲୁକ୍‌କାୟିତ— ସେ ଯେତେବେଳେ ପ୍ରକାଶିତ ହେବ— ତମାମ୍ ଦୁନିଆଁକୁ ତୋଫାନର ତାଣ୍ଡବ ଭିତରେ ଦୋହଲାଇ ଦେବ । ଶୁକୁରାର ଅଶାନ୍ତି, ଅସନ୍ତୋଷ, ଘୃଣାର ଅଗ୍ନି ବିସ୍ଫୋରଣରେ ମଧୁ ମହାନ୍ତି ଚିରଦିନ ପାଇଁ ସଂସାରରୁ ଚାଲିଗଲା । ଶୁକୁରା ଜିଅଲ ଗଲା । କଥାଟା ଚାରିଆଡ଼େ ପ୍ରଘଟ ହୋଇଗଲା ।

ଟିକେ ଟିକେ କଥାରେ ବନବାସୀମାନେ ହତ୍ୟା କରିବାର ବହୁ ନଜିର ଅଛି । ଭାଇ-ଭାଇ, ବାପ-ପୁଅ, ସ୍ୱାମୀ-ସ୍ତ୍ରୀ ରଗାରଗି ହେଲେ କିମ୍ବା ସ୍ତ୍ରୀ ଉପରେ ପାଶବିକ ଅତ୍ୟାଚାର ହେଲେ ତୀର ମରାମରି କରି ଜୀବନନାଶ କରିଦିଅନ୍ତି । ପୋଲିସ ଆଗରେ ସଫା ସଫା ମାନିଯାଆନ୍ତି । ଶୁକୁରାର ତୀରମରା ନିଆରା । ଯିଏ ମଣିଷ ହାଡ଼ର ହିଡରେ ରକ୍ତର ସିଆର କାଟୁଥିଲା, ସେହି ମଧୁ ମହାନ୍ତିକୁ ବିଲର ହିଡ଼ରେ ତୀର ମାରି ରକ୍ତ ବୁହାଇ ଦେଲା । କମ୍ କଥା ନୁହେଁ । ମଧୁ ମହାନ୍ତି ଭଳିଆ ଯେଉଁମାନେ ମୋଞ୍ଚା ମୋଞ୍ଚା ମଣିଷଙ୍କୁ ଲହୁ ଲୁହାଣ କରି କୁଢ଼ କୁଢ଼ ଶବର ପାହାଡ଼ ସୃଷ୍ଟି କରୁଥିଲେ, ସେମାନେ କୋକୁଆ ଭୟରେ ଥରି ଉଠିଲେ । ଅତ୍ୟାଚାରିତ ମଣିଷଗୁଡ଼ା ଟିକେ ଥୟ ଧରିଲେ । ସରକାରୀ ଜୀବଗୁଡ଼ା ଯେଉଁମାନେ ଦୁର୍ନୀତି ପାରାବାରରେ ଉବୁଟୁବୁ ହେଉଥିଲେ, ସେମାନେ ଏଥର ଶଙ୍କି ଗଲେ । କିନ୍ତୁ ଶୁକୁରାର ଏତେ ସାହସ କେଉଁଠୁ ଆସିଲା ଯାର ଟେର କେହି ପାଇଲେ ନାହିଁ ।

ଜ୍ୱାଇଁ ଜିଅଲ ଯିବା ଖବର ପାଇ ମାଣିକ ମାଝୀ ଝିଅ ନାତିକୁ ନିଜ ଘରକୁ ନେଇ ଆସିଥିଲା । ସେଦିନ ମାନସ ଦାସ ଖାଦ୍ୟ ଆନ୍ଦୋଳନ ପାଇଁ ପାଟପୁର ଅଞ୍ଚଳରେ ଚାଷୀ ମୂଲିଆମାନଙ୍କର ସଭା କରୁଥିଲେ । ସଭା ସରିଲା ପରେ ମାଣିକ ମାଝୀ ମାନୁବାବୁଙ୍କୁ କାକୁତି ମିନତି କରି ଘରକୁ ଯିବାକୁ ନିମନ୍ତ୍ରଣ କଲା । ବାଟରେ ଜଣେ କର୍ମୀ ମାନୁବାବୁଙ୍କ ପାଇଁ ରୋଷେଇ କରି ଅପେକ୍ଷା କରିଥିଲା । ସେଠାରେ ଖିଆପିଆ ସାରି ରାତି ଚାରିଘଡ଼ି ସରିକି ମାଣିକ ମାଝି

ଘରେ ପହଞ୍ଚିଲେ । ମାଣିକ ମାଝି ଭାରି ଖୁସି । ବାବୁଙ୍କୁ ଖାଇବାକୁ ଡାକିଲା । ମାନୁବାବୁ ଖାଇ ସାରିଥିବାରୁ ମନା କରିଦେଲେ ।

ବୁଢ଼ା କହିଲା— ନାଇଁ ବାବୁ ! ନ ଖାଇଲେ ମୋ ମନ ଭଲ ଲାଗିବ ନାହିଁ ।

— ମଉସା ! କହିଲି ପରା— ଆଉ ଖାଇଲେ ପେଟ ଖରାପ ହେବ— ହଜମ ହେବନି ।

ବୁଢ଼ା କହିଲା— ହଉ ବାବୁ ! ଖଟିଆରେ କନ୍ଥା ପଡିଛି । ଶୋଇବୁ ଆ ।

ମାନୁବାବୁ ଖଟିଆରେ କନ୍ଥାଟା ବିଛାଇ ଗୋଟିଏ କନ୍ଥାକୁ ତକିଆ କରି ବିଶ୍ରାମ ନେଲେ । ପାଖ ଖଟିଆରେ ବୁଢ଼ା ପିକା ଲଗାଇ ଦି' ଢ଼ୋକ ଟାଣି ଦେଇ କହିଲା— ବାବୁ ! ମଶା ଡାଉଁଶ ଲାଗିବେ ବୋଲି ଝୁଣାଧୂଆଁ ଦେଇଛି ।

ଖୋଲା ଘର ।

ଗୋଟିଏ ପାଖରେ ଗାଈ, ବଦଳ, ଛେଳି, ମେଣ୍ଢା— ସେମାନଙ୍କ ମଳମୂତ୍ରର ଏକ ସମ୍ମିଶ୍ରଣ... ଭୁରୁକୁଟିଆ ଗନ୍ଧ । ଅବଶ୍ୟ କିଛିଟା ଝୁଣା ଧୂଆଁରେ କଟିଯାଉଛି । ତା' ସତ୍ତ୍ୱେ ମଝିରେ ମଝିରେ ପବନ ବୋହିଗଲେ ଗନ୍ଧଟା ନାକରେ ପଶିଯାଉଛି । ମାନୁବାବୁଙ୍କର ନାକ ଘୋଡ଼ାଇ ଶୋଇବାର ଅଭ୍ୟାସ ନ ଥିବାରୁ ଟିକେ ବ୍ୟସ୍ତ ହେଉଛନ୍ତି— ଚେଷ୍ଟା କରି ମୁହଁ ଘୋଡ଼ାଇ ଶୋଇବାକୁ ।

ବାବୁ ! ବୁଢ଼ା ପଚାରିଲା ।

ହୁଁ ! ମାନୁବାବୁ ଜବାବ ଦେଲେ ।

— ଆଚ୍ଛା କହିଲୁ ବାବୁ— ଗୋଟାଏ କଥା ପଚାରିବି ପଚାରିବି ବୋଲି ଅନେକ ଦିନୁ ଭାବିଲିଣି— କାଳେ ତୁ କ'ଣ ଭାବିବୁ ବୋଲି ପଚାରି ପାରିନି ।

— କୁହ ମଉସା ! ଯାହା ମନକୁ ଆସୁଛି ପଚାର !

ବୁଢ଼ା ପଚାରିଲା— ଆମେ ସବୁ ପିଲାଛୁଆ ଘରଦ୍ୱାର ଛାଡ଼ି ଯାଇପାରୁନୁ । ତୁ ପୁଅ —ଘରଦ୍ୱାର ବାପ ମା' ଭାଇଭଉଣୀ ଛାଡ଼ି ଆମ ମଙ୍ଗଳ ପାଇଁ ଗାଁ ଗାଁ ବୁଲି ବୁଲି ବୁଝାଉଛୁ । ତୋ ପାଇଁ ଆମମାନଙ୍କର ନୂଆ ଜୀବନ ଫେରି ଆସିଛି । ତୁ ତ ଆମର ସାକ୍ଷାତ ଭଗବାନ ।

ମାନସ ଦାସ ଉତ୍ତର ଦେଲେ— ମୁଁ କିଛି ନୁହେଁ— ଭଗବାନ ନୁହେଁ। ଭଗବାନ ବୋଲି କିଛି ନାହିଁ। ସବୁ କର୍ମଫଳ। ଭଲ ମନ୍ଦ-ନ୍ୟାୟ ଅନ୍ୟାୟ-ଦିନରାତି-ସତ୍ୟ ଅସତ୍ୟ ଯେମିତି ଅଛି— ଯିଏ ଭଲ ନ୍ୟାୟ ସତ୍ୟ ପଥରେ ଯିବ— ତା'ର ମଙ୍ଗଳ ହେବ। ଯିଏ ମନ୍ଦ-ଅନ୍ୟାୟ-ଅସତ୍ୟ ପଥରେ ଯିବ ତା'ର କ୍ଷତି ହେବ। ଯେତେ ସବୁ ପରିବର୍ତ୍ତନ ହେଲାଣି— ହେଉଛି— ସବୁ ସତ୍ୟ ନ୍ୟାୟ ପଥରେ— ସଂଗଠିତ ଶକ୍ତି ମାଧମରେ। କେବଳ ଜଣେ ବ୍ୟକ୍ତି ସବୁ ପରିବର୍ତ୍ତନ କରିପାରିବ ନାହିଁ। ଆଜି ଗାଆଁଗଣ୍ଡା ଲୋକଙ୍କର କେତେ ମଙ୍ଗଳ ହୋଇଛି। କେବଳ ମୋ ପାଇଁ ହୋଇନି— ଆପଣମାନେ ସମସ୍ତେ ମିଳିମିଶି ଏଇ ପରିବର୍ତ୍ତନକୁ  ଆଣିଛନ୍ତି—ମୁଁ ନିମିତ୍ତ ମାତ୍ର। ଚାଷୀ ମୂଲିଆ ଘରେ ଜନ୍ମ ହେଇଛି— ବାପା କଷ୍ଟ କରି ମୋତେ ପାଠ ପଢ଼ାଇଛନ୍ତି। ପାଠ ପଢ଼ି ନ୍ୟାୟ ଅନ୍ୟାୟ ଜାଣିଲାରୁ ନ୍ୟାୟ ପଥ ବାଛି ନେଇଛି— ନ୍ୟାୟ ପଥରେ ଯିବା ଅର୍ଥ ଅନ୍ୟାୟକୁ ବିରୋଧ କରିବା— କେବଳ ମୋ କର୍ତ୍ତବ୍ୟ ପାଳନ କରିବାକୁ ଚେଷ୍ଟା ଚଳାଇଛି।

ମଉସା ! ବାପ ମା ଭାଇ ଭଉଣୀଙ୍କୁ ଛାଡ଼ି ଆସିଛି— ହେଲେ ସବୁ ଗାଁରେ ବାପା ମା ଭାଇ ଭଉଣୀଙ୍କୁ ପାଉଚି... ହେଇ ! ତୁମେ ଯେମିତି ମୋତେ ପୁଅ ବୋଲି ଡାକୁଛ !

ଜାଣିଲ ମଉସା ! ମୋରି ଭଳି ଏଇମିତି କେତେ ପିଲା ଘରଦ୍ୱାର ପରିବାର ବନ୍ଧୁବାନ୍ଧବ ଛାଡ଼ି ସାରା ଖଟିଖିଆ ମଣିଷଙ୍କୁ ନିଜର କରି ନେଇଛନ୍ତି। ମୁଁ ଜଣେ କର୍ମୀ— ମୋ ଉପରେ କେତେ ବଡ଼ ବଡ଼ ନେତା ଅଛନ୍ତି। ସବୁଠୁ ବଡ଼ ନେତା ଅଛନ୍ତି— ଯାହାଙ୍କ ନୀତି ଆଦର୍ଶ ଶିକ୍ଷାକୁ ପାଥେୟ କରି ଆମେ ସବୁ କର୍ମ କରିଯିବାକୁ ଅଦମ୍ୟ ଚେଷ୍ଟା ଚଳାଇଛୁ। ଭଲ କାମ ପାଇଁ ଜୀବନ ଉତ୍ସର୍ଗ କରିବାକୁ ଆମର କୁଣ୍ଠା ନାହିଁ।

ବୁଢ଼ା କହିଲା— ପୁଅରେ ! ପ୍ରତି ଘରୁ ଯଦି ତୋ'ରି ଭଳିଆ ପୁଅ ଝିଅମାନେ ବାହାରନ୍ତେ— ତା ହେଲେ ଆମ ଖଟିଖିଆ ଲୋକଙ୍କ ଅବସ୍ଥା ପରିବର୍ତ୍ତନ ହୋଇଯାଆନ୍ତା।

ମାନୁବାବୁ କହିଲେ— ଠିକ୍ ଯେ, କିନ୍ତୁ କେବଳ ଘରୁ ଘରୁ ଦେଶକାମ କରିବାକୁ ପିଲା ବାହାରିଗଲେ ହେବନାହିଁ। ସେମାନଙ୍କୁ ଟ୍ରେନିଂ ନେବାକୁ ହେବ।

ସେମାନେ ସତ୍ୟମିଥ୍ୟା କ'ଣ ଭଲ ଭାବେ ଜାଣିବେ— ପ୍ରତିନିୟତ କର୍ମ କରିଯିବେ। ଜ୍ଞାନ ଓ କର୍ମର ମିଳନରେ କାମ ସଫଳ ହେବ।

ବୁଢ଼ା କହିଲା— ଆମେ ତ ସବୁ ପାଠଶାଠ ପଢ଼ିନୁ। ଜ୍ଞାନ ଅରଜନ କରିବୁ କେମିତି ?

ମାନୁବାବୁ କହିଲେ— ଜ୍ଞାନ ଅର୍ଜ୍ଜନରେ ପାଠ ପ୍ରତିବନ୍ଧକ ନୁହେଁ। ତା'ପରେ ଏ ଦେଶରେ ବହୁ ଶିକ୍ଷିତ ପାଠୁଆ ଲୋକ ଅଛନ୍ତି— ସେମାନେ କାହିଁକି ଅକାମୀ ମୂର୍ଖଙ୍କ ଭଳି କାର୍ଯ୍ୟ କରୁଛନ୍ତି— ସତ୍ୟନ୍ୟାୟ କର୍ମ କରିବାକୁ ଡରୁଛନ୍ତି ? ସେମାନେ ଯଦି ନ୍ୟାୟପଥରେ ଚାଲନ୍ତେ— ତା'ହେଲେ କେବେଠାରୁ ଏ ଦେଶର ପରିବର୍ତ୍ତନ ହୋଇ ସାରନ୍ତାଣି। ସେମାନେ ସୁବିଧାବାଦୀ-ସ୍ୱାର୍ଥପର-ଥିଲାବାଲାଙ୍କ ପଛେ ପଛେ ଗୋଡ଼େଇ କିଛି ସ୍ୱାର୍ଥ ହାସଲ କରୁଛନ୍ତି। ଯେଉଁ ଶିକ୍ଷିତମାନେ ନିଃସ୍ୱାର୍ଥପର-ସତ୍ୟବାଦୀ, ସେମାନେ ହିଁ ଖଟିଖିଆ, ମୁକ୍ତି ଆନ୍ଦୋଳନରେ ସାହାଯ୍ୟ କରିପାରିବେ।

ସାଧାରଣ ଲୋକେ ଶିକ୍ଷାଦୀକ୍ଷା ଅଭାବରୁ ମୂଳ ସମସ୍ୟାକୁ ବୁଝି ପାରନ୍ତି ନାହିଁ। ବିପଦ ଆପଦ ପଡ଼ିଲେ, କି ଅଭାବ ଅନଟନ ପଡ଼ିଲେ ସେମାନେ ଠାକୁର ଠାକୁରାଣୀଙ୍କୁ ଡାକନ୍ତି – ଭାଗ୍ୟବାଦୀ ହୋଇପଡ଼ନ୍ତି – ଯାହା ଦ୍ୱାରା ସମସ୍ୟାର ସମାଧାନ ହୋଇପାରେନା। ଠାକୁର ଠାକୁରାଣୀଙ୍କୁ ଡାକି ଡାକି ଶେଷରେ ସେମାନେ ହତାଶ ହୋଇ ପଡ଼ନ୍ତି। ସମସ୍ୟା ଏଣେ ବଢ଼ି ବଢ଼ି ଯାଏ। ସମସ୍ୟାର ଜାଲରେ ଛନ୍ଦି ହୋଇ ଖାଲି ଧନ୍ଦି ହେବାଟାହିଁ ଯାହା ସାର ହୁଏ।

ଜାଣିଲ ମଉସା ! ଠାକୁର ଠାକୁରାଣୀଙ୍କୁ ମୁଁ ବିଶ୍ୱାସ କରେନି। ଯେଉଁମାନଙ୍କ ମନରେ ପାପ ପ୍ରବେଶ କରିଯାଏ – ହତାଶାର ପଙ୍କରେ ପଡ଼ିଥାନ୍ତି – ସେମାନେ ଭାଗ୍ୟ-ଭଗବାନଙ୍କ ଉପରେ ନିର୍ଭର କରି ପୂଜାପାଠ, ମନ୍ଦିର, ମସ୍‌ଜିଦ୍, ଗୀର୍ଜା ଆଦିରେ ହଜାର ହଜାର ଟଙ୍କା ଖର୍ଚ୍ଚ କରି ଭୋଗରାଗ କରନ୍ତି। କିନ୍ତୁ ଏହା କେବଳ ଅନ୍ୟକୁ ଦେଖେଇ ହେବା, ନିଜକୁ ଠକିବା ଛଡ଼ା କିଛି ନୁହେଁ। ଯିଏ ଯେତେ ମନ୍ଦିର ମସ୍‌ଜିଦ୍ ତୋଳାଇଛି, ଭୋଗରାଗ କରୁଛି ତା'ର ମୂଳ ଚରିତ୍ର ବଦଳି ଯାଇନାହିଁ। ସେ ମହାନ୍ ଦେଶପ୍ରେମିକ ହୋଇଯାଇନି କି ପର ପାଇଁ ସବୁ ସମ୍ପତ୍ତି ଦାନ କରି ଯାଇନି, ବରଂ କେତେକ ଦେଶଦ୍ରୋହୀ, ଜନଦ୍ରୋହୀ, ପରସମ୍ପତ୍ତି ହରଣକାରୀ ପାଲଟି ଯାଇଛନ୍ତି। ଚିତା ଚଇତନ କାଟି ଠାକୁରଙ୍କୁ ଧୂପ ଦୀପ ଦିଆଯାଏ, କ୍ଷୀର ଢ଼ଳାଯାଏ, ଘିଅ ପୋଡ଼ାଯାଏ - ସବୁ କ'ଣ ଠାକୁର ଖାଇଯାଆନ୍ତି ନା ପିଇ ଯାଆନ୍ତି ?

ବୁଢ଼ା ଚୁପ୍‌ଚାପ୍ ସବୁକଥା ଶୁଣୁଥିଲା । କହିଲା– ବାବୁ ! ସତରେ ଭୋଗ କ'ଣ ଠାକୁର ଖାଆନ୍ତି ନାହିଁ ?

ମାନୁବାବୁ କହିଲେ – ନାସ୍ତିକ ମୁନୀ ଚାର୍ବାକ୍ ଦେବତାଙ୍କ ଉଦ୍ଦେଶ୍ୟରେ ନଡ଼ିଆ, କଦଳୀ, ଗୁଡ଼ ଘର ଚାଳ ଉପରେ ଥୋଇ ଜଗି ରହିଲେ । ଠାକୁର କିନ୍ତୁ ଖାଇଲେ ନାହିଁ । କେବଳ ଜନ୍ଦା, ପିମ୍ପୁଡ଼ି, କୁଆଙ୍କର ଲାଭ ହେଲା ।

କର୍ମ ନକରି ଭାଗ୍ୟକୁ ଯେଉଁମାନେ ଜାବୁଡ଼ି ଧରିଥାନ୍ତି, ସେମାନେ ସବୁଠୁ ବେଶି ଦହଗଞ୍ଜ ହୁଅନ୍ତି – ଗରିବ ଲୋକମାନେ ସବୁଠୁ ବେଶୀ ଠାକୁରଙ୍କୁ ମାନନ୍ତି – ସେମାନେ ସବୁଠୁ ବେଶୀ ହଇରାଣ ହୁଅନ୍ତି ।

ବୁଢ଼ା କହିଲା— ବାବୁ ! ଏତେକଥା ଅଛି ? ଆଚ୍ଛା କହିଲୁ ପୁଅ, ତୁମେମାନେ ଯୋଉ ମୁକ୍ତି ଆନ୍ଦୋଳନ କରୁଛ—ଯାକୁ ଶେଷ ପର୍ଯ୍ୟନ୍ତ ମୁଣ୍ଡି ମାରିବ ନା— ମଝିରୁ କିଏ କୁଆଡ଼େ ପଳେଇଯିବ ?

ମାନୁବାବୁ ମାଣିକ ମାଝୀର ଗହୀରିଆ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ— ହଁ ମଉସା ! ବହୁ ବିପ୍ଳବୀ କଷ୍ଟ ସହିନପାରି କିମ୍ବା ବିପଥଗାମୀ ହୋଇ ଅଧାରୁ ପଳାଇ ଯାଇଛନ୍ତି । ଏ କେବଳ ଆମ ଦେଶର କଥା ନୁହେଁ— ପୃଥିବୀର ଯୋଉ ଯୋଉ ଦେଶରେ ମୁକ୍ତି ଆନ୍ଦୋଳନ— ସ୍ୱାଧୀନତା ଆନ୍ଦୋଳନ ହୋଇଛି— ସେଠାରେ ବି ଏଇମିତି ଘଟଣାମାନ ଘଟିଛି ।

— ଆଚ୍ଛା ବାବୁ ! ଏ ଘଟଣା ଘଟିବ କାହିଁକି— ଯା ପାଇଁ ତ କିଛି ବାଟ ଅଛି ।

— ହଁ ଅଛି ! ସବୁ ସମସ୍ୟାର ସମାଧାନ ପାଇଁ ରାସ୍ତା ଅଛି । ମୁଁ କାହିଁକି ଏଠାକୁ ଆସିଛି ! ମୋର ଲକ୍ଷ୍ୟ ହେଲା ଏ ସମାଜକୁ ପରିବର୍ତ୍ତନ କରିବା କାର୍ଯ୍ୟରେ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ କର୍ମ କରିଯିବି । ସମାଜକୁ ପରିବର୍ତ୍ତନ କରିବାକୁ ହେଲେ ପ୍ରଥମେ ନିଜକୁ ପରିବର୍ତ୍ତନ କରିବାକୁ ହେବ । ନିଜକୁ ପରିବର୍ତ୍ତନ କରିବାକୁ ହେଲେ ନିଜ ଭିତରେ ଯେଉଁ ଶତ୍ରୁକୁ ଲାଳନପାଳନ କରି ରଖିଛେ, ତାଙ୍କୁ ହତ୍ୟା କରିବାକୁ ହେବ ।

.. ମାଣିକ ମାଝୀ ଚିହିଁକି ଉଠି କହିଲା— କ'ଣ କହିଲୁ ବାବୁ, ନିଜକୁ ନିଜେ ହତ୍ୟା କରିବ ?

ମାନସ ଦାସ କହିଲେ— ନିଜ ଭିତର ଶତ୍ରୁକୁ ହତ୍ୟା କରିବାକୁ ହେବ ।

ବୁଢ଼ା ଲିଭି ଯାଇଥିବା ପିକାରେ ଅଗ୍ନି ସଂଯୋଗ କରି ଦି' ଢ଼ୋକ ଟାଣିନେଇ ଉଦ୍‌ବିଗ୍ନ ହୋଇ ମାନୁବାବୁଙ୍କୁ ହଲାଇ ଦେଇ କହିଲା— ତୁ ଏ କ'ଣ କହୁଛୁ ବାବୁ !

ମାନୁବାବୁ ହସି ହସି କହିଲେ— ନିଜ ଭିତରେ ଶତ୍ରୁ କୋଉମାନେ ତାଙ୍କୁ ଜାଣିବାକୁ ହେବ । ସେମାନେ ହେଲେ— ଗର୍ବ, ଅହଙ୍କାର, ହାମବଡ଼ା, ଲୋଭ, ସ୍ୱାର୍ଥ, ମୋହ, ଅନ୍ଧବିଶ୍ୱାସ, ତୋ'ର ମୋର ନୀତି, ଈର୍ଷାକୁ ଯୋଉମାନେ ମନ ଭିତରେ ସାଇତି ରଖିବେ— ସେମାନେ କେବେ ଆଗକୁ ବଢ଼ି ପାରିବେନାହିଁ । ସେମାନଙ୍କ ଗତି ପଛକୁ ପଛକୁ । ତେଣୁ ଖଟିଖିଆଙ୍କ ରାଜୁତି ଆଣିବାକୁ ହେଲେ ଏବଂ ତାକୁ ଠିକ୍ ଭାବେ ସମ୍ଭାଳିବାକୁ ହେଲେ ନିଜ ଭିତର ଶତ୍ରୁକୁ ହତ୍ୟା କରିବାକୁ ହେବ । ହତ୍ୟା ଅର୍ଥ ପ୍ରତିନିୟତ ଜୀବନ ସଂଗ୍ରାମରେ ଲିପ୍ତ ରହିଲେ— ସଠିକ ରାସ୍ତା ଓ ନେତୃତ୍ୱରେ କାମ କରିଗଲେ ଏ ଶତ୍ରୁ ଗୁଡ଼ା ଧୀରେ ଧୀରେ ମନରୁ ପୋଛି ହୋଇଯିବେ ।

ବୁଢ଼ା କହିଲା— ଓ ହୋଃ ! ଏତେ ଗହିରୀ କଥା ଅଛି ?

ଏହି ସମୟରେ ପାଖରେ ବନ୍ଧା ଯାଇଥିବା ଗାଈଟାକୁ ହଡ଼ାବଳଦଟା ତା ପୋକରା ସିଙ୍ଗରେ ଭୁଷି ଦେବାରୁ ଗାଈଟା ଗଁ ଗଁ ଶବ୍ଦ କରି ପଘା ଛିଡ଼ାଇ ଦେଲା । ବୁଢ଼ା ଗାଈକୁ ପୁଣି ଆଉ ଗୋଟେ ପଘାରେ ଆଣି ଖୁଣ୍ଟରେ ବାନ୍ଧିଲା । ମାନୁବାବୁ ଟିକେ ପାଖରେ ଚାଲବୁଲ କରୁଥିଲେ । ବୁଢ଼ା ଗାଈଟା ବାନ୍ଧି ଆସି ଲିଭିଯାଇଥିବା ପୋଡ଼ା କାଠଗଣ୍ଡିଟାକୁ ଖେଞ୍ଚାଖେଞ୍ଚି କରିଦେଲାରୁ ନିଅଁ ଧାସ ଉପରକୁ ଉଠିଲା । ବୁଢ଼ା ଟିକେ ନିଆଁ ପୁଇଁ ହେଲା । ହାତଗୋଡ଼ ଶେକି ହେଲା । ମାନୁବାବୁ ଖଟିଆକୁ ଆସିଲେ ।

ବୁଢ଼ା କହିଲା— ଜାଣିଲୁ ପୁଅ, ଏ ସାଲେ ମେଘ ମାରିଛି— ଫସଲ ପୂରା ଉଠିବ ନାହିଁ । ବାଇଗଣ ଛ'ଗୁଣ୍ଠ ଲଗାଇଛି । କୂଅରୁ ପାଣି ଦେଉଛି— ଫଳ ଦି'ଟା ଭଲ ହେଲେ ଚଳିଯିବୁ ।

ମାନୁବାବୁ କହିଲେ— କାହିଁକି ! ଗାଁ ବାଲା ସବୁ ଏକାଠି ହୋଇ ସଂଗ୍ରାମ କମିଟି ନେତୃତ୍ୱରେ ଡ୍ୟାମରୁ ପାଣି ଆଣିବାକୁ ଲାଗି ପଡିଲେ ଏ ବର୍ଷ ପନିପରିବା ଫସଲ ଭଲ ହୁଅନ୍ତା ।

ବୁଢ଼ା ପିକା ଟାଣୁ ଟାଣୁ କହିଲା— ହୁଅନ୍ତା ଯେ— ଡ୍ୟାମରୁ ସିଧା ନାଳ ଖୋଳି ଆଣିଲେ ଗାଁ ଯାକ ଲୋକଙ୍କ ବାଡ଼ିରେ ପାଣି ମାଡନ୍ତା । କାଲି ସକାଳେ ବାବୁ— ସମସ୍ତଙ୍କୁ ଡାକି ଆଣିବି— ତୁ ସମସ୍ତଙ୍କୁ କହିଲେ— ସଙ୍ଗେ ସଙ୍ଗେ ସମସ୍ତେ ଲାଗି ପଡ଼ିବେ ।

— ହଉ ମଉସା ! ସକାଳୁ ସକାଳୁ ସମସ୍ତଙ୍କୁ ଡାକିବ । କଥାବାର୍ତ୍ତା କରି ଶୀଘ୍ର ଗଲେ ଆର ଗାଁରେ ସଂଗ୍ରାମ କମିଟିବାଲା ଅପେକ୍ଷା କରିଥିବେ— ସେଠାରେ ଗୁରୁତର ବିଷୟ ଆଲୋଚନା ଅଛି ।

— ଇମିତି କି ଗୁରୁତର ବିଷୟ ଯେ ଏତେ ବେଗି ଯିବୁ ?

— ଯେ ଲୋକଙ୍କୁ ଯେତେ ବୁଝେଇଲେ କ'ଣ ବୁଝୁଛନ୍ତି ? ଆଜିକାଲି ଜାତି ଅଜାତି କ'ଣ ! ସବୁ ତ ଆମେ ମଣିଷ ଜାତି— ଥିଲାବାଲା-ନଥିଲାବାଲା । ଖଣ୍ଡାୟତ ଝିଅକୁ ଆଦିବାସୀ ପୁଅ ଭଲ ପାଇ ବାହା ହେଲା ବୋଲି ଭୀଷଣ ଝଗଡ଼ା ଲାଗିଛନ୍ତି । ଉଭୟ ପକ୍ଷର ଲୋକ ସଂଗ୍ରାମ କମିଟିରେ ଅଛନ୍ତି । ଉଭୟଙ୍କର ଶତ୍ରୁ ଏକ— ପୁଣି ନିଜ ନିଜ ଭିତରେ ଝଗଡ଼ା କାହିଁକି ? ଆମ ନୀତିରେ ଜାତି ଅଜାତି ଭେଦ ଭାବ— ଛୁଆ ଅଛୁଆଁକୁ ବାରଣ କରାଯାଏ । ସବୁ ଆମେ ମେହନତି ଜାତିର । ଆମ ଭିତରେ ବନ୍ଧୁ ବାନ୍ଧବ— ବିବାହ ସବୁ ଚଳିବ ।

— ଏ କଥା ବାବୁ ଯଦି କରେଇ ଦିଅନ୍ତୁନା— ଲୋକଙ୍କର ଭାରି ଉପକାର ହୁଅନ୍ତା । ଆଚ୍ଛା—ବାପା— ତୁ ଟିକେ ମୋତେ ବୁଝାଇ କହିଲୁ— ଏଇ ଜାତିଜାତି ଭିତରେ ଏତେ ରାଗରୁଷା ଝଗଡ଼ା କାହିଁକି ? ଲୋକଙ୍କ ଭିତରେ ଯେମିତି ଅଲଗା ଅଲଗା ଜାତି ଅଛି— ଠାକୁରଙ୍କ ଭିତରେ ସେଇମିତି ଥିବ ତ ?

ମାନୁବାବୁ ମଶାର ପ୍ରାର୍ଦୁଭାବରେ ଗୋଡ଼ ମୁହଁକୁ ଠି ଠା ବଜାଉ ବଜାଉ କହିଲେ— ମଉସା— ଆଉ ଟିକେ ଝୁଣା ଧୂଆଁ ଦିଅ— ମୁଁ ତୁମ କଥାର ଜବାବ ଦେଉଛି ।

ବୁଢ଼ା ଉଠି ଝୁଣା ଧୂଆଁ ଦେଲା ।

ମାନୁବାବୁ କଥାର ଖିଅ ଧରିଲେ— ଜାଣିଲ ମଉସା— ଜାତି ଅଜାତି, ହିନ୍ଦୁ ମୁସଲମାନ, ଖ୍ରୀଷ୍ଟିୟାନ, ଜୈନ-ବୌଦ୍ଧ, ଆଦିବାସୀ-ହରିଜନ୍, ବ୍ରାହ୍ମଣ-

କରଣ, ଖଣ୍ଡାୟତ ସବୁ ମିଛ । ମଣିଷ ହେଉଛି ସତ୍ୟ । ମଣିଷ ଭିତରେ ଦୁଇଟା ଜାତୀ ଅଛି । ଲୁଟି ଖିଆ ଜାତି—ଖଟିଖିଆ ଜାତି । ଲୁଟିଖିଆଙ୍କ ଚରିତ୍ର ଏକ— ସେ ହିନ୍ଦୁ ହେଉ କି ମୁସଲମାନ ହେଉ । ଖଟିଖିଆଙ୍କର ମଧ୍ୟ ସେଇ ଏକ ଚରିତ୍ର । ସମସ୍ତେ ଖଟିବେ ଖାଇବେ । ଏହି ନିୟମ ଯେତେବେଳେ ସବୁଲୋକ ମାନିନେବେ— ସେତେବେଳେ ଜାତିଧର୍ମ ବୋଲି କିଛି ରହିବ ନାହିଁ ।

— ହଁ ବାପା ! ଠିକ୍ କହିଲୁ । ଆଚ୍ଛା-ବାବୁ କହିଲୁରେ— ଏ ଧର୍ମ ନେଇ ହିନ୍ଦୁ-ମୁସଲମାନମାନଙ୍କ ଭିତରେ ହଣାକଟା ହେଲା— ସେ ଖବର ଯେମିତି ସୁନ୍ଦରୀ ନଈ ପାଖ ଗାଁରେ ପହଞ୍ଚିଛି— ସେଠି ତ ହିନ୍ଦୁ ମୁସଲମାନ ବର୍ଷ ବର୍ଷ ଧରି ଭାଇଭାଇ ହୋଇ ଚଳୁଥିଲେ—ସାଙ୍ଗେ ସାଙ୍ଗେ ହଣାକଟା ଲାଗିଗଲା । ଏ ପାଖରୁ ତିନି ସେ ପାଖରୁ ସାତ ମଶାଣିକୁ ଗଲେ । ବାକି ପଚିଶ୍ ତିରିଶ ଲୋକ ଡାକ୍ତରଖାନାରେ ପଡିଲେ ।

ଏମିତି କାହିଁକି ହେଲା ? ମୋତେ ଟିକେ ବୁଝେଇ କହ ।

ମାନୁବାବୁଙ୍କୁ ଟିକେ ଟିକେ ନିଦ ଧରି ଆସୁଥିଲେ ବି— ବୁଢ଼ା କଥାର ଜବାବ ନଦେଲେ ଠିକ୍ ହେବନି ଭାବି ଖଟିଆରୁ ଉଠି ଚଦର ଘୋଡ଼ାଇ ହୋଇ ବସିଲେ । ତାଙ୍କ ଦେଖାଦେଖି ବୁଢ଼ା ମଧ୍ୟ ଉଠି ବସି ପିଙ୍କାଟାରେ ନିଆଁ ଧରି ଦି' ଢୋକ ଟାଣୁ ଟାଣୁ କହିଲା— ଏଥର କହ ବାପା— ଟିକେ ଶୁଣିବା... ।

ଜାଣିଲ ମଉସା ! ସବୁ କଥାରେ ସବୁ ଜାଗାରେ ମୂଳକଥା ହେଉଛି— କ୍ଷମତା ଦଖଲ । ଶାସନଭାର ଯାହା ଉପରେ ପଡ଼ିବ ସେମାନେ ନିଜେ ଆରାମ ଅୟସରେ ରହି ଅନ୍ୟମାନଙ୍କୁ ଶୋଷିବେ । ଶାସନର ଅସଲ କଥା ହେଲା ଶୋଷଣ । ଯୁଗ ଆରମ୍ଭରୁ ଏଇ କ୍ଷମତା ଲଢ଼େଇ ନେଇ କେତେ ଯେ ଯୁଦ୍ଧ ହୋଇ ଯାଇଛି ତା'ର ଇୟତ୍ତା ନାହିଁ । ଆଦିମ ସାମ୍ୟବାଦୀ ସମାଜରେ ଜୋର ଯା'ର ମୁଲକ ତା'ର ହେଉଥିଲା । ବୁଦ୍ଧି ବୃତ୍ତି ବଢ଼ିବା ସଙ୍ଗେ ସଙ୍ଗେ ଦଳେ ଚାଲାକ ଚତୁର ଲୋକ ସଂଖ୍ୟାରେ ଅତ୍ୟନ୍ତ କ୍ଷୁଦ୍ର ହେଲେ ବି ବୃହତ ମଣିଷ ଗୁଡ଼ାକୁ ବୋକା ବନାଇ ଶାସନ ଶୋଷଣ କରି ଚାଲିଥାନ୍ତି । ମୂଳରୁ ଦାସ ମାଲିକ, ରଜା ଜମିଦାର ମାନେ ଏଇ ଭଳି କରୁଥିଲେ— ବିଦେଶୀମାନେ ଦେଶ ଦଖଲ କରି ଶାସନ ଶୋଷଣ ଚଳାଇଲେ— ସେମାନେ ଯିବା ପରେ ପୁଞ୍ଜିପତିମାନେ ଶାସନ ଶୋଷଣ କରୁଛନ୍ତି । ଏମାନେ ମଧ୍ୟ ସଂଖ୍ୟାରେ ଅତି ନଗଣ୍ୟ ।

ମଣିଷର ଏଇ ମଣିଷରୂପୀ ଶତ୍ରୁମାନେ ଶାସନ କ୍ଷମତା ଦଖଲ କରିବା ପାଇଁ ଲୋକଙ୍କୁ ବହୁ ଅଜବ ସ୍ୱପ୍ନରେ ମତୁଆଲା କରି ଅର୍ଥ ଓ ବାହୁବଳ ଏବଂ ଜାଲିଆତି ଜରିଆରେ ଶାସନ କ୍ଷମତା ଦଖଲ କରିଥାନ୍ତି । ମଉସା— ଅର୍ଥ ବୁଝି ପାରୁଥିବ— ବାହୁବଳ ହେଲା ଗୁଣ୍ଡା ବଦମାସଙ୍କ ସାହାଯ୍ୟରେ ।

— ହଁ ବାବୁ, ବୁଝି ପାରୁଛି, ବୁଢ଼ା ଉତ୍ତର ଦେଲା । କ୍ଷମତା ଦଖଲ ପରେ କେବେ ଅଜବ ସ୍ୱପ୍ନକୁ ସଫଳ କରିପାରନ୍ତି ନାହିଁ । ସେଥିପାଇଁ ନାନା ପ୍ରକାର ଭେଳିକି ଦେଖାଇ ଲୋକଙ୍କ ମଧ୍ୟରେ ନାନା ପ୍ରକାର ବିବାଦ ହଣାକଟା-ଧର୍ମ-ଧର୍ମ ମଧ୍ୟରେ ଜାତି-ଜାତି ମଧ୍ୟରେ ସଂଘର୍ଷ ଲଗାଇ ଦିଅନ୍ତି ।

ବୁଢ଼ା ମନଧ୍ୟାନ ଦେଇ ଶୁଣୁଥିଲା— ପୁଣି ପିଙ୍କାରେ ନିଆଁ ଲଗାଇ ଢ଼ୋକେ ଟାଣିଦେଇ କହିଲା— ଆଚ୍ଛା-ବାବୁ ଯେଉଁମାନେ ହଣାକଟା ହୁଅନ୍ତି— ସେମାନେ ସବୁ ମଣିଷ । ଆଗରୁ ଭାଇଭାଇ ହୋଇ ଚଳୁଥିଲେ— ସମସ୍ତଙ୍କ ରକ୍ତ ଲାଲ । ଗୋଟିଏ ମୁଣ୍ଡ, ଦି'ଟା ହାତ, ଦି'ଟା ଗୋଡ଼— ପୁଣି ଜାତି-ଧର୍ମ ସବୁ ଆସିଲା କେଉଁଠୁ ?

ବୁଢ଼ାର ସରଳ ଭାଷାରେ ଉଙ୍କି ମାରୁଥିବା ଗଭୀର ପ୍ରଶ୍ନକୁ ମାନୁବାବୁ କିଭଳି ଭାଷାରେ ବୁଝାଇବେ ମନେ ମନେ ଭାବୁଥାନ୍ତି । ବୁଢ଼ା କହିଲା— ବାବୁ, ନିଦ ଲାଗିଲାଣି କି ?

ମାନୁବାବୁକ କହିଲେ— ନାଇଁ ମଉସା ! କହୁଛି ଶୁଣ ! ଏଇଜାତି ଧର୍ମ ବିଷୟ କହିବାକୁ ହେଲେ ଭାଷା ଟିକେ କଷ୍ଟ ହୋଇ ଯାଇପାରେ । ସରଳ ଭାଷାରେ କହିବାକୁ କେତେବେଳୁ ଚିନ୍ତା କଲିଣି ।

ବୁଢ଼ା କହିଲା— ହଉ ! ପୁଅ-କହ— କଷ୍ଟ ଭାଷା ହେଲେବି କିଛି କିଛି ବୁଝିବି— ନବୁଝିଲେ ପରେ ମୋତେ ବୁଝାଇ ଦେବୁ ।

ମାନୁବାବୁ କହିଲେ— ଜାଣିଲ ମଉସା ! ଆମ ଦେଶରେ ବର୍ତ୍ତମାନ ଦରଦାମ ବଢ଼ିବଢ଼ି ଆକାଶକୁ ଛୁଇଁଲାଣି । ଯାହେ କାମ ନାହିଁ— ବେକାରୀଙ୍କ ସଂଖ୍ୟା ବଢ଼ି ବଢ଼ି ହିମାଳୟ ପର୍ବତ ଛୁଇଁଲାଣି— ଅଣ୍ଟିରେ ପଇସା ନାହିଁ— ଜିନିଷ ପତ୍ର କିଣିବାର କ୍ଷମତା ନାହିଁ । ଅଭାବ ଅନଟନ ଲାଗି ରହିଛି । ଖାଦ୍ୟ ଅଭାବରେ ଲୋକଙ୍କ ହାଡ଼ ଗଣି ହେଉଛି । ଆମ ଦେଶରେ କି ଆମ ରାଜ୍ୟରେ ଏପରିକି ଏଇ ପଞ୍ଚାୟତରେ ଯୋଉ ସବୁ ରାଜନୈତିକ ଦଳ ଜିତି ଶାସନ

କ୍ଷମତା ଦଖଲ କରୁଛନ୍ତି— ସେମାନେ ସାଧାରଣ ଲୋକଙ୍କର ମୂଳ ସମସ୍ୟା ଖାଦ୍ୟବସ୍ତ୍ର ବାସଗୃହ ଶିକ୍ଷା ସ୍ୱାସ୍ଥ୍ୟ ଚାକିରୀ ପ୍ରଭୃତି ସମସ୍ୟା ସମାଧାନ କରି ପାରୁନାହାଁନ୍ତି । ଲୋକଙ୍କ ଭିତରେ ଯେତେବେଳେ ଅଶାନ୍ତି ଅସନ୍ତୋଷର ନିଆଁ ଜଳିବାକୁ ଆରମ୍ଭ କରୁଛି— ସେତେବେଳେ ଲୋକମାନଙ୍କୁ ଅନ୍ୟଆଡ଼କୁ ମୁହେଁଇ ଦିଆଯାଉଛି । ଜାତ-ଜାତି ଭିତରେ ଧର୍ମ-ଧର୍ମ ଭିତରେ ଅଞ୍ଚଳ-ଅଞ୍ଚଳ ଭିତରେ ସଂଘର୍ଷ ଲଗାଇ ଦିଆଯାଉଛି ।

ସବୁଠାରୁ ସାଂଘାତିକ ସଂଘର୍ଷ ହିନ୍ଦୁ-ମୁସଲମାନମାନଙ୍କ ମଧ୍ୟରେ ଲାଗୁଛି । ଉଭୟ ସମ୍ପ୍ରଦାୟ ମଧ୍ୟରେ ଧର୍ମରେ ଅନ୍ଧ ପାଲଟି ଯାଇଥିବା କିଛି ଲୋକ ଅଛନ୍ତି— ସେମାନେ ଏହାକୁ ଉସ୍‌କେଇବାରେ ଲାଗିଛନ୍ତି । ଏହି ସାମ୍ପ୍ରଦାୟିକ ଦଙ୍ଗାର ବିଷମୟ ଫଳ ସାରା ଦେଶକୁ ଭୋଗିବାକୁ ପଡୁଛି ।

ବୁଢ଼ା କହିଲା— ଏତେ କଥା ଅଛି— ? କହିଲୁ ପୁଅ— ଯୋଉ ବିଷଫଳ କଥା କହୁଛ, ଯଦି ସେ ଫଳର ଗଛକୁ ମୂଳରୁ ଉପାଡ଼ି ନଷ୍ଟ କରିଦିଆଯାଆନ୍ତା— ତା'ହେଲେ ହଣାକଟା ବନ୍ଦ ହେବ କି ?

ମାନୁବାବୁ ବୁଢ଼ାର ବୁଝିବା ଓ ପରବର୍ତ୍ତୀ ପ୍ରଶ୍ନ ପଚାରିବା ବୁଦ୍ଧିକୁ ମନେ ମନେ ତାରିଫ କରି କହିଲେ— ବହୁ ବଡ଼ ବଡ ଲୋକ ଚେଷ୍ଟା କରି ଏପର୍ଯ୍ୟନ୍ତ ସଫଳ ହୋଇ ପାରି ନାହାଁନ୍ତି ।

ସାମ୍ପ୍ରଦାୟିକତା ଭଳି ବିଷବୃକ୍ଷର ମୂଳ ଉପାଡ଼ିବା କଥା ଚିନ୍ତା ନକରି ଯେଉଁମାନେ ଫଳ ଡାଳ ପତ୍ର ନଷ୍ଟ କରୁଛନ୍ତି— ତାହା କିଛି ସମୟ ପାଇଁ ଶାନ୍ତ ରହୁଛି— ପୁଣି ପାଣିପବନ କିରଣ ପାଇ ସେହି ବିଷାକ୍ତ ବୃକ୍ଷ କାୟା ବିସ୍ତାର କରି ବିଷମୟ ଫଳ ବାଣ୍ଟିବାରେ ଲାଗିଛି ।

ବୁଢ଼ା ଖଟିଆରୁ ଉଠି ବସିଲା । ଲିଭି ଯାଇଥିବା ପିଙ୍କାକୁ କଡେଇରେ ଥିବା ନିଆଁରେ ଖେଞ୍ଚି ଦି' ଢ଼ୋକ ଟାଣି କହିଲା— ପୁଅରେ— ସମସ୍ତେ ମିଶି ଯଦି ସେଇ ବିଷଗଛ ଯେଉଁଠି ଯେଉଁଠି ଅଛି ତାକୁ ହାଣି ତା ଚେରକୁ ଖୋଳି ନଷ୍ଟ କରି ଦିଅନ୍ତେ, ତା'ହେଲେ ଆଉ ଦଙ୍ଗା ଫସାଦ ହୁଅନ୍ତା ନାହିଁ ।

ମାନୁବାବୁ କହିଲେ— ଠିକ୍ କହିଲ ମଉସା— ଏ କାର୍ଯ୍ୟ କରିବାକୁ ହେବ । ଜାଣିଲ ମଉସା— ଏ ବିଷ ଫଳକୁ ଆମ ଦେଶରେ ବ୍ରିଟିଶ୍‌ବାଲା ଲଗାଇ ଦେଇ ଚାଲିଗଲେ । ତାଙ୍କର ଦାୟାଦ— ଏ ଦେଶର ଶାସକ—

ଥିଲାବାଲାମାନେ ନିଜ ସ୍ୱାର୍ଥ ପାଇଁ ଏ ବିଷଗଛକୁ ବଢ଼େଇ କୁଢ଼େଇ ରଖିଛନ୍ତି । ଯେତେବେଳେ ନଥିଲାବାଲା ଲୋକମାନେ ଏକାଠି ହୋଇ ଥିଲାବାଲା ଶୋଷକଙ୍କ ବିରୋଧରେ ଲଢ଼ିବାକୁ ବାହାରୁଛନ୍ତି— ଠିକ୍ ସେତିକି ବେଳେ କିଛି ଶଇତାନମାନଙ୍କୁ ହାତରେ ରଖି ଧର୍ମ ଜାତି ଭିତରେ ସଂଘର୍ଷ ଲଗାଉଛନ୍ତି । ସବୁ ଧର୍ମ, ସବୁ ଜାତି ମୂଳରୁ ନଥିଲା— ଏଇ ମଣିଷ ଧର୍ମ ଜାତି ସୃଷ୍ଟି କରି ସବୁବେଳେ ହିଂସା—ବିବାଦ ଲଗେଇ ରଖିଛି । ଧର୍ମ ଜାତି କିଛି ନୁହେଁ— ସବୁ ଅନ୍ଧବିଶ୍ୱାସ ।

ବୁଢ଼ା କହିଲା— ଏଥର ବାବୁ ବୁଝିଲି । ଏକଥା ମୁଁ ଗାଁ ଲୋକଙ୍କୁ କହିବି । ହଉ ! ଏଥର ଟିକେ ବାପ— ବିଶ୍ରାମ ନେ ।

ମାନୁବାବୁ କହିଲେ— ହଉ ମଉସା— କାଲି ସକାଳୁ ପୁଣି କଥା ହେବା ।

ଏତିକି ବେଳେ ଭିତର ଘରୁ ବୁଢ଼ୀ ଡାକ ଛାଡ଼ିଲା— ପୁଅ, ଦେଖିବୁ ଆ— ଝିଅକୁ ଭାରି ଜର— ନାତିଆ ଦିହରେ ଖଇ ଫୁଟୁଛି ।

ମାନୁବାବୁ, ମାଝିଆଣୀ ବୁଢ଼ୀର ଡାକ ଶୁଣି ଫୁଲ ଶୋଇଥିବା ଘରକୁ ପଶିଗଲେ । ଫୁଲ ଖଟ ଉପରେ ଶୋଇଛି । ଛୁଆଟି କ୍ଷୀର ଖାଉଛି । ମାଣିକ ମାଝୀର ଘରଣୀ କହିଲା— ବାବୁ ଦେଖିଲୁ— ଝିଅ, ଛୁଆ ଦିହ କ'ଣ ହୋଇଛି ।

ମାନୁବାବୁ ଛୁଆ ଦେହରେ ହାତ ମାରିଲା କ୍ଷଣି ଦେହଟା ସତକୁ ସତ ଗରମରେ ଭରପୁର । ଛୋଟ ଛୁଆ । ଦେହରେ ଖଇଫୁଟା ଦାଗ । ମା'କୁ ଜ୍ୱର । ଛୁଆଟି ମା' କ୍ଷୀର ନ ଖାଇ କଇଁ କଇଁ ହୋଇ କାନ୍ଦୁଛି ।

— ''ମା', ଛୁଆଙ୍କୁ ଭୀଷଣ ଜ୍ୱର । ପାଖରେ ତ ଔଷଧ କିଛି ନାହିଁ । ଗୋଟିଏ କାମ କର— ମା'ର ଦେହରେ ଭୀଷଣ ଜ୍ୱର— ତା' କ୍ଷୀର ଛୁଆକୁ ଖାଇବାକୁ ଦିଅନା । ଛୁଆକୁ ଟିକେ ଗାଈ କ୍ଷୀର ଦିଅ । ସଙ୍ଗେ ସଙ୍ଗେ ଡାକ୍ତରଖାନାକୁ ଯାଅ— ମୁଁ ଖଣ୍ଡେ ଚିଠି ଦେଉଛି ।''

ସଙ୍ଗେ ସଙ୍ଗେ ମାଣିକ ମାଝୀ ଲଣ୍ଠନ ଲଗାଇ ଠେଙ୍ଗାଟାଏ ଧରି ଛୁଟି ଚାଲିଲା ଦଶମାଇଲ ଦୂର ଡାକ୍ତରଖାନାକୁ । ସଙ୍ଗରେ ପୁଅ ଓ ତିନିଜଣ ଗାଁ ଲୋକ ଗଲେ ।

ରାତି ବାରଟା ସୁଦ୍ଧା ପୁଅର ଜ୍ୱର କମିଆସିଲା । ହେଲେ ମା'ର ଜ୍ୱର ବଢ଼ିଚାଲିଲା । ଜ୍ୱର ବଢ଼ିବା ସଙ୍ଗେ ସଙ୍ଗେ ଫୁଲର ସ୍ତନରେ କ୍ଷୀରଗୁଡ଼ାକ ଜମାଟ ବାନ୍ଧି ଗଲା । ସ୍ତନହରାର ପୂରା ଲକ୍ଷଣ ଦେଖାଗଲା । ଫୁଲ ଯନ୍ତ୍ରଣା ପାଇବାକୁ ଲାଗିଲା । ତା'ର ବାଁ ସ୍ତନଟି ଫୁଲିଯାଇ ବିରାଟ ଆକାର ଧାରଣ କଲା । ସ୍ୱାଭାବିକ ଆୟତନର ଦୁଇଗୁଣ ହୋଇଗଲା । ବିନ୍ଧିବା ଆରମ୍ଭ କଲା । ଫୁଲ କଇଁ କଇଁ ହୋଇ କାନ୍ଦି ଉଠିଲା ।

ବୁଢ଼ୀ କହିଲା— ପୁଅରେ ! ଟିକେ ଦେଖ— ଝିଅ ମୋର କାହିଁକି ଭାରି କଷ୍ଟ ପାଉଛି ।

ରାତି ପ୍ରାୟ ଗୋଟାଏ ହେବ । ଯେଝା ଘରେ ଯିଏ । କେତେବେଳୁ ଟାଟି ପଡ଼ିସାରିଲାଣି । ଫୁଲର ଯନ୍ତ୍ରଣା ଏବଂ କାନ୍ଦଣା ଯୋଗୁଁ ମାନୁବାବୁ ଶୋଇ ପାରିନଥିଲେ । ଫୁଲ ଶେଯ ପାଖକୁ ଯାଇ ଦେଖିଲେ—ଛୁଆ କ୍ଷୀର ଖାଇ ପାରିନି । କ୍ଷୀର ଜମାଟ ବାନ୍ଧି ଯାଇଛି । ଫୁଲର ଯନ୍ତ୍ରଣା ବଢ଼ି ଚାଲିଛି । ବୁଢ଼ୀ ଉପାୟ ପଚାରିଲା ।

ମାନୁବାବୁ କହିଲେ— ଡାକ୍ତର ସିନା ଆସିଲେ ଉପାୟ କହିବ— ମୁଁ କ'ଣ କହିବି ? ତେବେ ମୋର ଯାହା ମନେ ହୁଏ— କ୍ଷୀର ଗୁଡ଼ାକ ଯେ କୌଣସି ଉପାୟରେ ବାହାରିଲେ ଯନ୍ତ୍ରଣା କମିଯିବ । ବର୍ତ୍ତମାନ ପାଇଁ ଛୋଟ ଛୁଆର ଖରାପ କ୍ଷୀର ଗୁଡ଼ାକ ଖାଇବା ଠିକ୍ ହେବନାହିଁ ।

ମାନୁବାବୁଙ୍କ ହଠାତ୍ ତାଙ୍କ ପିଲାଦିନର ଗୋଟିଏ ଘଟଣା ମାନସପଟ୍ଟରେ ନାଚିଗଲା । ତାଙ୍କ ପିଇସୀ କୁନିଅପାଙ୍କର ସ୍ତନହରା ହୋଇଥିଲା ଠିକ୍ ଏଇ ଫୁଲ ପରି । ସେତେବେଳେ ଗାଁରୁ ପୁରୁଣାକାଳିଆ ବୁଢ଼ୀ ଜଣେ ଆସି କୁନିଅପାଙ୍କ ବିଷାକ୍ତ କ୍ଷୀର ବାହାର କରିବାକୁ ମାନୁବାବୁଙ୍କୁ କହିଥିଲା । ଆଉ ତାଗିଦ୍ କରିଥିଲା— ଚୁଚୁମି ଚୁଚୁମି କ୍ଷୀର କଂସାରେ ପକାଇବୁ— ମୋତେ ଢୋକିବୁ ନାହିଁ ।

କୁନିଅପାର କାନ୍ଦଣା ସହି ନପାରି ସେଦିନ ଦଶବର୍ଷର ଶିଶୁ ଗାଁ ବୁଢ଼ୀ କଥା ଅକ୍ଷରେ ଅକ୍ଷରେ ପାଳନ କରିଥିଲା । କୁନିଅପା ସତକୁ ସତ ଭଲ ହୋଇଯାଇଥିଲା । ସେଇ କଥା ଫୁଲର ମା'କୁ ମାନୁବାବୁ ଡାକ୍ତରୀ ଢ଼ଙ୍ଗରେ କହିଲେ ।

ବୁଢ଼ୀ ସଙ୍ଗେ ସଙ୍ଗେ ଫୁଲ ସ୍ତନଟିକୁ ଧରି କ୍ଷୀର ବାହାର କରିବାକୁ ଉଦ୍ୟମ କରିବାରୁ ଫୁଲ ଚିଡ଼ି ଉଠିଲା । ଭୀଷଣ ଫୁଲିଯାଇ ଟାଣ ହୋଇଯାଇଛି । କେବଳ ଏକମାତ୍ର ଉପାୟ ଚୁଚୁକାଟିକୁ ଚୁଚୁମି ଚୁଚୁମି କ୍ଷୀରଗୁଡ଼ାକ ବାହାର କରିବାକୁ ହେବ । ବୁଢ଼ୀ ପକ୍ଷେ ଅସମ୍ଭବ । ରାତିରେ ବି ଅନ୍ୟ କାହାକୁ ଡାକି ଏ କାମ କରିବା ସମ୍ଭବପର ନୁହେଁ । ବେଳକୁ ବେଳ ଫୁଲର ଯନ୍ତ୍ରଣା ବଢ଼ି ଚାଲିଛି । ଛୁଆଟି ବି ଭେଁ ଭେଁ ରଡ଼ି ଛାଡ଼ିଲା । ବୁଢ଼ୀ କ'ଣ ଭାବିଲା କେଜାଣି— କହିଲା, ପୁଅ— ଝିଅ ଦୁଃଖ ଦେଖିପାରିବିନି । ତୁ ପୁଅ— ମୋ ପୁଅଟା ପରା— କିଛି ଭାବିବୁ ନାହିଁ । ଲାଜ କରିବୁ ନାହିଁ । ଝିଅର ବିଷକ୍ଷୀର ଯେମିତି ହେଲେ ବାହାର କରିଦେ— ଝିଅଟା ବଞ୍ଚିଯାଉ ।

ବୁଢ଼ୀ କାନ୍ଦୁଥିବା ଛୁଆଟିକୁ ଛାତିରେ ଜାକି ଧରିଲା । ଫୁଲ ଯନ୍ତ୍ରଣାରେ ଛଟପଟ ହେଉଥିଲା । ମାନୁବାବୁ ଦୋଘାଇରେ ପଡ଼ିଥିଲେ । ମନରେ ସଙ୍କୋଚ । ଫୁଲର ସ୍ତନରୁ ଖରାପକ୍ଷୀର ନିଷ୍କାସନ କରି ଯନ୍ତ୍ରଣା ଉପଶମ କରିବାରେ ସାହାଯ୍ୟ କରିବେ— ଏହା କେତେ ଦୂର ସମ୍ଭବ— ଏଇ କଥା ଭାବି ଭାବି ପ୍ରାୟ ପାଞ୍ଚମିନିଟ୍ କାଳ ସେଠାରେ ଜଡ଼ ପାଲଟିଗଲେ ।

ଫୁଲ କାନ୍ଦି କାନ୍ଦି ଅସ୍ଥିର ହୋଇ କହିଲା— ବାବୁ ! ବାବୁ !! ମୁଁ ଆଉ ବଞ୍ଚିବି ନାହିଁ । ଭାରି କଷ୍ଟ—ଓଃ—ଆଉ ସମ୍ଭାଳି ପାରୁନି । ଛାତିଟା ମୋର ଫାଟି ପଡୁଛି । ମୁଁ ମରିଯିବି । ଛୁଆଟିକୁ..... ଛୁଆଟିକୁ ମଣିଷ କରିବୁ— ତାକୁ ବୁଝେଇ ଦେବୁ । ସେ ତୋ କଥା ମାନିବ । ମୋ ଛୁଆକୁ ହୀନିମାନ କରିବ

ନାହିଁ । ଆଉ ପାରିବିନି— ଏ କଷ୍ଟ ଆଉ ସହି ପାରିବିନି । ମୋତେ ବଞ୍ଚା— ମୋ ପୁଅକୁ..... କରୁଣ ଆର୍ତ୍ତନାଦରେ କାନ୍ଦି ଉଠିଲା ଫୁଲ ।

ମାନୁବାବୁ ତଥାପି ନୀରବ । ନିବିଡ଼ ଅନ୍ଧକାର ରାତ୍ରିରେ ଅପରୂପା ସୌନ୍ଦର୍ଯ୍ୟମୟୀ ପୂର୍ଣ୍ଣଯୌବନା ଫୁଲର ଛାତିରେ ମୁହଁ ଲଗାଇବେ ? ଉଚିତ୍ କି ଅନୁଚିତ୍ ? ଅନ୍ୟ ପକ୍ଷରେ ଜୀବନ ବଞ୍ଚାଇବା ପାଇଁ ବିନୀତ ପ୍ରାର୍ଥନା— କରୁଣ ଆର୍ତ୍ତନାଦ । ଆଃ— ଆଃ— ମରିଯିବି ।

ଫୁଲର ମା' ଆସି ମାନୁବାବୁଙ୍କ ଗୋଡ଼ ଧରି ନେହୁରା ହେଲା— ପୁଅରେ, ମୋ ଝିଅକୁ ବଞ୍ଚା । ତୁ କ୍ଷୀର ଗୁଡ଼ା ଶୋଷି ଦେ— ବିଷ ଛାଡ଼ିଯିବ— ମୋ ଝିଅ ବଞ୍ଚିଯିବ । ଏଇ ଉପକାର ଟିକେ କରରେ ପୁଅ.... ।

ମାନୁବାବୁ ତଥାପି ନୀରବ । ବୁଢ଼ୀର ଆବେଦନ ନିବେଦନ ବ୍ୟର୍ଥ ହେବାରୁ ସେ ମାନୁବାବୁଙ୍କ ପାଖରୁ ଚାଲିଗଲା ।

ମାନୁବାବୁ କିଂକର୍ତ୍ତବ୍ୟବିମୂଢ଼ । ଯନ୍ତ୍ରଣା ଜର୍ଜ୍ଜରିତ ଫୁଲ ମୁହଁ ଖୋଲି କହିଲା— ବାବୁ ! ତୁ ଲାଜ କରୁଛୁ ? ତୁ ପା— କହୁଥିଲୁ— ଲଜ୍ଜା ମଣିଷର ଶତ୍ରୁ । ଯିଏ ଲଜ୍ଜା କରେ ସିଏ ସତ୍ୟକୁ ଅସ୍ୱୀକାର କରେ ! ତୁ ପୁଣି ତୋ କଥା ନିଜେ ମାନୁନୁ ? ବାଃ, ଭଲ ନେତା ହୋଇଛୁ ! ମୁହଁରେ ଗୋଟାଏ କଥା କହିବୁ— କାମରେ ଅଲଗା ! ତୋ ଲଜ୍ଜା ପାଇଁ ଗୋଟିଏ କଅଁଳାଛୁଆ ମରିଯିବ । ତୋ' ପାଇଁ ମୁଁ ଆତ୍ମହତ୍ୟା କରୁକରୁ ବଞ୍ଚିଲି । ଆଜି ମୁଁ ମରିବି— ମୋ ଛୁଆ ମରିବ । ବାପ ଜିଅଲରେ । ତୁ ଲଜ୍ଜାକୁ ସାଇତି ରଖିଥା । ଯା-ଯା, ଏଠି ଆଉ କାହିଁକି ମୁହଁପୋତି ଠିଆ ହେଲୁ ?

ଫୁଲର ଏଇ କେଇପଦ କଥା— ମାନୁବାବୁଙ୍କ ଚେତନାକୁ ଚିଆଇଁ ଦେଲା ଯେମିତି— ବିବେକ ବାରମ୍ବାର ଆନ୍ଦୋଳିତ ହେବାକୁ ଲାଗିଲା । ପ୍ରତିମୁହୂର୍ତ୍ତରେ ଆଖି ସାମ୍ନାରେ ଫୁଲର ଅକଥନୀୟ ଯନ୍ତ୍ରଣା । ଛୁଆଟି ହାଲିଆ ହୋଇ ଆଉ ଶବ୍ଦ କରୁନି । ବୁଢ଼ୀ ମା' ମଧ୍ୟ ବେହୋସ ହୋଇ ପଡ଼ିଲାଣି । ଫୁଲ ସେଇ ଯନ୍ତ୍ରଣା ମଧ୍ୟରେ ମା' ଛୁଆଙ୍କୁ ଯେତେ ହଲାଉଛି— କେହି ଶୁଣିବାକୁ ନାହିଁ ।

ଏଣେ ବିଜୁଳି ଘଡ଼ଘଡ଼ି ଚଡ଼ଚଡ଼ି ଖୁବ୍ ଜୋରରେ ମାରୁଛି । ପବନ ସିଃ ସିଃ ହୋଇ ବହୁଛି । ଦମକାଏ ଦମକାଏ କୋହଲା ପବନ ଘର ଭିତରକୁ ପଶି ଆସୁଛି । ଟିଣକବାଟ ଢ଼ୋ ଢ଼ୋ ବାଡ଼େଇ ହେଉଛି । ଲଣ୍ଠନ କାଚଟା କଳା

ପଡିଗଲାଣି । ଚାଳରୁ କଳା କଳା ଅନ୍ଧୁ, ପଡୁଛି । ବାହାରେ ବର୍ଷା ପବନରେ ଗଛଗୁଡ଼ା ଉଜରାଡ଼ ଭାଙ୍ଗିପଡିବାର ଶବ୍ଦ ହେଉଛି ।

ତଥାପି ମାନସ ଦାସ ନିଶ୍ଚଳ ନୀରବ ହୋଇ ଠିଆ ହୋଇଛନ୍ତି । ଫୁଲ ନିରୁପାୟ । ଆଖିରୁ ଲୁହ ଗଡ଼ିବାରେ ଲାଗିଛି । ମାନସ ଦାସଙ୍କୁ ନିମିଷେ ଚାହିଁ ରହି କହିଲା— ବାବୁ ! ମୁଁ ବିଷ ଖାଇବାକୁ ଯାଉଥିଲି— ତୁ ମୋତେ ଅଟକାଇଲୁ । ଆମ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଯେଉଁ ପାଚେରି ଠିଆ ହେଇଥିଲା— ସେ ପାଚେରୀ ଭାଙ୍ଗି ତୁ ଆମକୁ ମିଳାଇଦେଲୁ । ଭୂତ ଛଡ଼ାଇ ଦେଲୁ । ନୂଆ ଜୀବନ ପାଇଲି । ଯେଉଁ କାମ ବଇଦ, ଗୁଣିଗାରିଡ଼ି, ଠାକୁର, ଡାକ୍ତର କରିପାରି ନଥିଲେ— ତୁ କେତେ ସହଜରେ ସେ କାମ କରିଦେଲୁ । ଆଜି ମୋ ଗିରସ୍ତ ଜେଲରେ..... ଯଦି କିଛି ହେଇଯାଏ— ତା'ହେଲେ ଏ କଅଁଳିଆ ଛନ୍‌ଛନ୍ ପିଲାଟିର ମୁହଁ ସେ ଜେଲରୁ ଫେରି ଦେଖି ପାରିବ ତ ? ଏତେ କଷ୍ଟ କରି ଆମ ଉଜୁଡ଼ା ସଂସାରକୁ ସଜାଡ଼ି ଦେଇ ସୁନାର ଫସଲ ଫଳାଇଦେଲୁ । ଆଜି ତାକୁ ନିଜେ ଦଳିଚକଟି ଦେଇ ଚାଲିଯିବୁ ?

ତା'ପରେ ରହିରହି ଅସ୍ଫୁଟ ଗଳାରେ କହିଚାଲିଲା—

ହଉ !

ଯା...

ଚାଲିଯା ଏଠୁ....

ସବୁ ଉଜୁଡ଼ି ଯାଉ ।

କାହିଁକି କାଠ ଗଣ୍ଡିଟା ଭଳି ଠିଆ ହୋଇଛୁ ?

ଯା..... ଚାଲିଯା ଏଠୁ.....

ବଡ଼ କଷ୍ଟରେ ଏଇ କେଇ ପଦ କଥା କହି ଫୁଲ କାନ୍ଦି କାନ୍ଦି ମୁହଁ ତଳକୁ କରି ଭୂଇଁରେ ଲୋଟି ପଡ଼ିଲା ।

ଫୁଲର ଯନ୍ତ୍ରଣା ଜର୍ଜରିତ କଇଁ କଇଁ କାନ୍ଦ ମାନୁବାବୁଙ୍କ ମନକୁ ଦୋହଲାଇ ଦେଲା । ଶେଷ ନିଷ୍ପତ୍ତି ନେଇ ମାନୁବାବୁ ଫୁଲର ବୁକୁରୁ ବିଷାକ୍ତ କ୍ଷୀର ବାହାର କରିବାରେ ଲାଗିଲେ । ପିଲାଦିନେ ମାଆ ଭଳି ସ୍ନେହ କରୁଥିବା ଅପାଙ୍କୁ ସିନା

ବଞ୍ଚାଇଥିଲେ— ଆଜି ଯୁବାବସ୍ଥାରେ ଅଳ୍ପବୟସ୍କା ଆଦିବାସୀ ତରୁଣୀକୁ ବଞ୍ଚାଇବେ ।

ମାନୁବାବୁ ଫୁଲର ବୁକୁ ଉପରକୁ ମୁହଁ ନୁଆଇଁ ଆଣିଲେ..... ପାରୁ ପର୍ଯ୍ୟନ୍ତ ସମସ୍ତ ଶକ୍ତି ଖଟାଇ ବିଷାକ୍ତ କ୍ଷୀର ବାହାର କଲାବେଳେ ମାନୁବାବୁ ଏକପ୍ରକାର ଅସ୍ୱାଭାବିକ ଗନ୍ଧ ବାରିପାରୁଥାଆନ୍ତି । ଧୀରେ ଧୀରେ ଫୁଲ ଆଶ୍ୱସ୍ତ ହେଉଥାଏ । ମାନୁବାବୁ ପଚାରିଲେ— ଟିକେ ଭଲ ଲାଗୁଛି ?

ଫୁଲ କିଛି କହିଲା ନାହିଁ ।

ମାନୁବାବୁ ଫୁଲର କଷ୍ଟ ସଂପୂର୍ଣ୍ଣ ଊଣା କରିବା ପାଇଁ ବାକିତକ ବିଷାକ୍ତ କ୍ଷୀର ବାହାର କରୁଥାଆନ୍ତି......

ସିନ୍ଦୁରା ଫାଟି ଗଲାଣି । ଟିକେ ଫର୍ଚ୍ଚା ଦେଖାଗଲାଣି । କୁକୁଡ଼ା ରାବ ଶୁଣା ଗଲାଣି । ପଶୁପକ୍ଷୀ ଶବ୍ଦ ଆରମ୍ଭ କଲେଣି । କେହି କେହି ଉଠି ପାହାନ୍ତିଆ କାମ ଆରମ୍ଭ କଲେଣି । ସକାଳର ଲାଲ ସୂର୍ଯ୍ୟ ଉଇଁବାକୁ ଆଉମାତ୍ର କେଇକ୍ଷଣ ବାକି ।

ମାନୁବାବୁ ଫୁଲବକ୍ଷରୁ ଶେଷ ବିଷାକ୍ତ କ୍ଷୀର ନିର୍ଗତ କରିବାକୁ ଖୁବ୍ ଜୋର୍‌ରେ ଚୁଚୁକାଗ୍ରକୁ ଚୁଚୁମି ଥିବାବେଳେ ହଠାତ୍ ତାଙ୍କ ମୁଣ୍ଡରେ ଶକ୍ତ ଠେଙ୍ଗାର ପାହାର ବାଜିଲା । ମୁଣ୍ଡ ଫାଟି ରକ୍ତ ଝର ଝର ହୋଇ ଝରିଗଲା ।

ଫୁଲ ହତବାକ୍ ! ମୂକ ପାଲଟି ଗଲା ।

ତା'ର ବାପ ଭାଇ ଦି'ଜଣ ଖଣ୍ଡିଆ ଖାବରା ଓଦା ସରସର ଦିହରେ ଘର ଭିତରେ ତାଳଗଛ ଭଳି ଛିଡ଼ା ହୋଇ ରାଗରେ ଥରୁଥାନ୍ତି । ଆଖିରେ ନିଆଁ । ଡାକ୍ତରବାବୁ ରେନିକୋର୍ଟ ପିନ୍ଧି ବାହାରେ ଠିଆ ହୋଇଛନ୍ତି ।

ମାନୁବାବୁ କାହାକୁ କିଛି କହିଲେନି । କିଛି ବୁଝାଇବାକୁ ଚାହିଁଲେନି । ମାଝିଆଣୀ ବୁଢ଼ୀ ଚେତା ପାଇ ଉଠିବା ଆଗରୁ, କଅଁଳା ଛୁଆଟା ନିଦରୁ ଉଠି କାନ୍ଦିବା ପୂର୍ବରୁ ଆଉ ଫୁଲ ତାଙ୍କ ସପକ୍ଷରେ କିଛି କୈଫିୟତ ଦେବା ପୂର୍ବରୁ ହିଁ ଝୁଲା ବ୍ୟାଗଟି କାନ୍ଧରେ ଝୁଲାଇ ଚଳି ଚଳି ଆଗକୁ ଆଗକୁ ଚାଲିଗଲା ବେଳେ ଫୁଲର ବିଷାକ୍ତ କ୍ଷୀର ଜମାଥିବା କଂସାଟା ଗୋଡ଼ରେ ବାଜି ମାଟିରେ କ୍ଷୀରଗୁଡ଼ା ପଡ଼ିଗଲା— ତା ଉପରେ ମାନୁବାବୁଙ୍କ ଫଟା ମୁଣ୍ଡର ଠୋପା ଠୋପା ରକ୍ତ..............

କ୍ଷୀର ଓ ରକ୍ତର ରଙ୍ଗ ମିଶି ଚଟାଣରେ ଚିତ୍ରିତ ହୋଇଉଠିଲା ଗୋଟାଏ ମୌନ ମାନଚିତ୍ର ।



ରଚନା କାଳ:
୨୩ ସେପ୍ଟେମ୍ବର ୧୯୭୬
ରାତି ୧୨ଟାରୁ ଭୋର୍ ୫ଟା
କଟକ ସେଣ୍ଟ୍ରାଲ ଜେଲ

ପୁଷ୍ପ-ସୁରଭିତ ନୁହେଁ ବିପ୍ଳବର ପଥ...
କାଳେକାଳେ ତାହା କଣ୍ଟକିତ, କଙ୍କରିଳ,
କଠିନ-କଠୋର !
ଦୁର୍ଗମ-ଦୁସ୍ତର !

ବିଳାସବିଭୋର ନୁହେଁ ବିପ୍ଳବୀର ବ୍ରତ...
ଯୁଗେଯୁଗେ ତାହା ଶିଖାୟିତ ସାଧନାରେ ଦୀପ୍ୟମାନ,
ଅଗ୍ନିସ୍ନାତ ଆତ୍ମୋତ୍ସର୍ଗରେ ଅନିର୍ବାଣ,
ବିରାମବିହୀନ !
ଲହୁଲୁହାଣ !
କ୍ଳେଶିହୀନ !

ସଠିକ୍ ବିପ୍ଳବର ଚୂଡ଼ାନ୍ତ ନିଷ୍ପତ୍ତି :
ଗତି । ଅଗ୍ରଗତି ।
ସଚ୍ଚା ବିପ୍ଳବୀର ବୈତାଳିକ ବୀଜମନ୍ତ୍ର :
ଚରୈବତି - ଚରୈବତି ।

ଲୁହର ଲହର ପାଖେ ଲଟକି ଯାଏ ନା ବିପ୍ଳବ...
ଲହୁର ଲହଡ଼ି ପାଖେ ଅଟକି ଯାଏ ନା ବିପ୍ଳବୀ...
ସବୁକିଛି ଶୀତଳ ସ୍ଥିତାବସ୍ଥାର ସେତୁବନ୍ଧ ଭାଙ୍ଗି,
ପୀଡ଼ିତ ପରମ୍ପରାର ପ୍ରାଚୀନ ପ୍ରାଚୀର ଧ୍ୱସ୍ତବିଧ୍ୱସ୍ତ କରି,
ବଜ୍ରକଠିନ ସଂକଳ୍ପ ନେଇ,
ଆଗେଇ ଯିବାକୁ ପଡ଼େ ବିପ୍ଳବୀକୁ –
ଆସନ୍ତା କାଲିର ଶାଣିତ ସୁପ୍ରଭାତ ଉଦ୍ଦେଶ୍ୟରେ !

ପୃଷ୍ଠଭୂମିରେ ରହିଯାଏ –
ଲକ୍ଷ ନକ୍ଷତ୍ରର ସଲଜ୍ଜ ଶର୍ବରୀ...
ନିଦ୍ରିତ ନୀଳପଦ୍ମର ନିଃଶବ୍ଦ ନଗରୀ...
ସହସ୍ର ସ୍ୱପ୍ନର ସଞ୍ଚିତ ସାଏରା...
ସ୍ମୃତି ଅସୁମାରି !

ମାୟାଧର ନାୟକଙ୍କ
**'କାହା ପାଇଁ ରକ୍ତ ଝରେ'**
ଏଇ ବିଶାଳ ବୈପ୍ଳବିକ ମୂଲ୍ୟବୋଧର ଅନବଦ୍ୟ ଅଭିବ୍ୟକ୍ତି ।
ସମାଜବାଦୀ ବାସ୍ତବତାର ସତ୍ୟ ଓ ଦର୍ଶନ
ଏ ଉପନ୍ୟାସର ଅକ୍ଷୁଣ୍ଣ ଆଧାରଶିଳା ।



ଯୋଗାଯୋଗ :
ମାୟାଧର ନାୟକ
ୱାର୍କର୍ସ୍ ରେଷ୍ଟ ହାଉସ୍,
ଗୋଶାଳା ଛକ,
ଯାଜପୁରରୋଡ଼, ଯାଜପୁର

ଦୂରଭାଷ :
୦୬୭୨୬-୨୦୯୪୮